# ଶ୍ରୀଦୁର୍ଗାଶତକମ୍



ଶ୍ରୀ ଭରତ ଚନ୍ଦ୍ର ନାଥ

# ଶ୍ରୀଦୁର୍ଗାଶତକମ୍

*ରଚନା ଓ ଓଡ଼ିଆ ଗଦ୍ୟପଦ୍ୟାନୁବାଦ*

— ଶ୍ରୀ ଭରତ ଚନ୍ଦ୍ର ନାଥ
ସଂସ୍କୃତ ପ୍ରାଧାପକ
ବକ୍ସି ଜଗବନ୍ଧୁ ବିଦ୍ୟାଧର କନିଷ୍ଠ ମହାବିଦ୍ୟାଳୟ
ଭୁବନେଶ୍ୱର-୧୪

*ପ୍ରକାଶକ*

ଶ୍ରୀ ଶ୍ରୀ ରାଧାଗୋବିନ୍ଦ ମନ୍ଦିର ପରିଚାଳନା ସମିତି
ବିଜେବି ନଗର, ଭୁବନେଶ୍ୱର-୧୪

ମୂଲ୍ୟ - ମାତୃକୃପା



## ଶ୍ରୀ ଦୁର୍ଗାଙ୍କ ଧ୍ୟାନ

ଓଁ ବିଦ୍ୟୁଦ୍ଦାମସମପ୍ରଭାଂ ମୃଗପତିସ୍କନ୍ଧସ୍ଥିତାଂ ଭୀଷଣାଂ
କନ୍ୟାଭିଃ କରବାଳଖେଟବିଲସଦ୍ଧସ୍ତାଭିରାସେବିତାମ୍ ।
ହସ୍ତୈଶ୍ଚକ୍ରଗଦାସିଖେଟବିଶିଖାଂଶ୍ଚାପଂ ଗୁଣଂ ତର୍ଜନୀଂ
ବିଭ୍ରାଣାମନଳାତ୍ମିକାଂ ଶଶିଧରାଂ ଦୁର୍ଗାଂ ତ୍ରିନେତ୍ରାଂ ଭଜେ ।।

*(ଶ୍ରୀଦୁର୍ଗାସପ୍ତଶତୀ, ଦ୍ୱାଦଶ ଅଧ୍ୟାୟ)*

## ଅନୁବାଦ

ମୁଁ ତ୍ରିନୟନା ଦୁର୍ଗାଦେବୀଙ୍କୁ ଧ୍ୟାନ କରୁଛି, ଯାହାଙ୍କ ଦ୍ୟୁତି ବିଜୁଳିର ଝଲକପରି ଅଟେ, ଯିଏ ସିଂହର ସ୍କନ୍ଧ ଉପରେ ଆସୀନ ହୋଇ ଭୟଙ୍କର ପ୍ରତୀତ ହେଉଛନ୍ତି, ହସ୍ତମାନଙ୍କରେ ଖଡ୍‌ଗ ଓ ଢାଲ ଧରି କନ୍ୟାମାନେ ଯାହାଙ୍କ ସେବା କରୁଛନ୍ତି, ଯିଏ ନିଜ ହସ୍ତମାନଙ୍କରେ ଚକ୍ର, ଗଦା, ଖଡ୍‌ଗ, ଢାଲ, ବାଣ, ଧନୁ, ପାଶ ଓ ତର୍ଜନୀ ମୁଦ୍ରା ଧାରଣ କରିଛନ୍ତି, ଯିଏ ଅଗ୍ନିତୁଲ୍ୟ ଦେଦୀପ୍ୟମାନ ତଥା (ମୁକୁଟରେ) ଚନ୍ଦ୍ରମା ଧାରଣ କରିଛନ୍ତି ।

# ଶ୍ରୀଦୁର୍ଗାଶତକମ୍

ଓଁସ୍ୱରୂପାଂ ମହାଦେବୀଂ ସଚ୍ଚିଦାନନ୍ଦରୂପିଣୀମ୍ ।
ଶ୍ରୀରୂପିଣୀଂ ମହାଶକ୍ତିଂ ବନ୍ଦେ ତାଂ ଭବତାରିଣୀମ୍ ।।୧।।

ଦୁର୍ଦଶାନାଶିନୀଂ ଦୁର୍ଗାଂ ସୁଖଶାନ୍ତିପ୍ରଦାୟିନୀମ୍ ।
ଗାୟତ୍ରୀରୂପିଣୀଂ ଦେବୀଂ ବନ୍ଦେ କଲ୍ମଷନାଶିନୀମ୍ ।।୨।।

ଯୈବ ଶକ୍ତିସ୍ୱରୂପା ଯା ଦୁଃଖଦାରିଦ୍ର୍ୟହାରିଣୀ ।
ନମାମି ତାଂ ଭବାନୀଂ ଯା ହୃତ୍କନ୍ଦରବିହାରିଣୀ ।।୩।।

ମହାବିଦ୍ୟାଂ ମହାମାୟାମଜ୍ଞାନଧ୍ୱାନ୍ତନାଶିନୀମ୍ ।
ସ୍ତୌମି ହୈମବତୀଂ ଦେବୀଂ ଦିବ୍ୟଜ୍ଞାନପ୍ରକାଶିନୀମ୍ ।।୪।।

ଭକ୍ତିପ୍ରୀତାଂ ସ୍ତୁତିପ୍ରୀତାଂ ଭକ୍ତଭାଗ୍ୟବିଧାୟିନୀମ୍ ।
ଶାମ୍ଭବୀଂ ପାର୍ବତୀଦେବୀଂ ବନ୍ଦେ ତାଂ ଭକ୍ତିଦାୟିନୀମ୍ ।।୫।।

## ଅନୁବାଦ

ପ୍ରଣବସ୍ୱରୂପିଣୀ, ମହାଦେବୀ, ସଚ୍ଚିଦାନନ୍ଦସ୍ୱରୂପା, ଶ୍ରୀରୂପିଣୀ, ମହାଶକ୍ତି, ଭବତାରିଣୀ ମା ଦୁର୍ଗାଙ୍କୁ ବନ୍ଦନା କରୁଛି ।।୧।।

ଦୁର୍ଦ୍ଦଶାନାଶିନୀ, ସୁଖଶାନ୍ତିପ୍ରଦାୟିନୀ, ଗାୟତ୍ରୀରୂପିଣୀ, ପାପବିନାଶିନୀ ଦେବୀ ଦୁର୍ଗାଙ୍କୁ ବନ୍ଦନା କରୁଛି ।।୨।।

ଯିଏ ଶକ୍ତିସ୍ୱରୂପା, ଯିଏ ଦୁଃଖଦାରିଦ୍ର୍ୟବିନାଶିନୀ ଓ ଯିଏ ହୃଦୟକନ୍ଦରରେ ବିହାର କରନ୍ତି, ସେହି ଭବାନୀଙ୍କୁ ନମସ୍କାର କରୁଛି ।।୩।।

ମହାବିଦ୍ୟା, ମହାମାୟା, ଅଜ୍ଞାନତମୋନାଶିନୀ, ଦିବ୍ୟଜ୍ଞାନପ୍ରକାଶିନୀ ଦେବୀ ହୈମବତୀଙ୍କୁ ସ୍ତୁତି କରୁଛି ।।୪।।

ଯିଏ ଭକ୍ତି ଓ ସ୍ତୁତିରେ ପ୍ରସନ୍ନ ହୁଅନ୍ତି, ଭକ୍ତମାନଙ୍କର ଭାଗ୍ୟବିଧାତ୍ରୀ ଓ ଭକ୍ତିଦାୟିନୀ, ସେହି ଶମ୍ଭୁପ୍ରିୟା ପାର୍ବତୀଦେବୀଙ୍କୁ ବନ୍ଦନା କରୁଛି ।।୫।।

ଅନ୍ନପୂର୍ଣ୍ଣାଂ ସଦାପୂର୍ଣ୍ଣାମମ୍ବିକାଂ ଭୁକ୍ତିଦାୟିନୀମ୍ ।
ମାହେଶ୍ୱରୀଂ ଜଗଦ୍‌ବନ୍ଦ୍ୟାଂ ବନ୍ଦେ ତାଂ ମୁକ୍ତିଦାୟିନୀମ୍ ॥୬॥

ଜଗତ୍କର୍ତ୍ତ୍ରୀଂ ଜଗଦ୍ଧାତ୍ରୀଂ ଜଗସଂହାରକାରିଣୀମ୍ ।
ବିମଳୋତ୍କର୍ଷିଣୀଂ ବ୍ରାହ୍ମୀଂ ବନ୍ଦେ ତାଂ ସିଦ୍ଧିରୂପିଣୀମ୍ ॥୭॥

ଦେବଦୁଃଖାପହାମମ୍ବାଂ ସର୍ବଦାନବଘାତିନୀମ୍ ।
ମୁମୁକ୍ଷୁପୂଜିତାଂ ଭଦ୍ରାଂ ବନ୍ଦେ ତାଂ ବୁଦ୍ଧିଦାୟିନୀମ୍ ॥୮॥

ଶରଣାଗତଜୀବାନାଂ ସକଳକ୍ଲେଶହାରିଣୀମ୍ ।
ସୁଖସମ୍ପତ୍‌ପ୍ରଦାମାଦ୍ୟାଂ ବନ୍ଦେ ତାଂ ବିଶ୍ୱଧାରିଣୀମ୍ ॥୯॥

ଅମେୟବିକ୍ରମାଂ ଜ୍ଞାନାଂ ବୈଷ୍ଣବୀଂ ବ୍ରହ୍ମବାଦିନୀମ୍ ।
ଅନନ୍ତପ୍ରେମରୂପାଂ ତାଂ ବନ୍ଦେ କୈବଲ୍ୟଦାୟିନୀମ୍ ॥୧୦॥

---

ଅନ୍ନପୂର୍ଣ୍ଣା, ସଦାପୂର୍ଣ୍ଣା, ଭୁକ୍ତିଦାୟିନୀ, ବିଶ୍ୱବନ୍ଦନୀୟା, ମୁକ୍ତିଦାୟିନୀ ସେହି ମାହେଶ୍ୱରୀ ଅମ୍ବିକାଙ୍କୁ ବନ୍ଦନା କରୁଛି ॥୬॥

ଜଗତର ସୃଷ୍ଟିକାରିଣୀ, ଜଗତର ପାଳନକାରିଣୀ, ଜଗତର ସଂହାରକାରିଣୀ, ପବିତ୍ର-ଅଭ୍ୟୁଦୟପ୍ରଦାୟିନୀ, ସିଦ୍ଧିସ୍ୱରୂପିଣୀ, ବ୍ରହ୍ମାଙ୍କର ସେହି ମୂର୍ତ୍ତିମତୀ ଶକ୍ତିଙ୍କୁ ବନ୍ଦନା କରୁଛି ॥୭॥

ଦେବତାମାନଙ୍କ ଦୁଃଖାପହାରିଣୀ, ସକଳଦାନବବିନାଶିନୀ, ମୁକ୍ତିକାମୀମାନଙ୍କ ଦ୍ୱାରା ପୂଜିତା, କଲ୍ୟାଣଦାୟିନୀ, ବୁଦ୍ଧିପ୍ରଦାୟିନୀ ମାତା ଦୁର୍ଗାଙ୍କୁ ବନ୍ଦନା କରୁଛି ॥୮॥

ଶରଣାପନ୍ନ ଜୀବମାନଙ୍କର ସମସ୍ତକ୍ଲେଶହାରିଣୀ, ସୁଖ ଓ ଐଶ୍ୱର୍ଯ୍ୟପ୍ରଦାୟିନୀ, ବିଶ୍ୱଧାରିଣୀ ସେହି ଆଦିମାତା ଦୁର୍ଗାଙ୍କୁ ବନ୍ଦନା କରୁଛି ॥୯॥

ଯାହାଙ୍କ ପରାକ୍ରମ ଅକଳନୀୟ, ଯିଏ ଜ୍ଞାନସ୍ୱରୂପା, ବେଦପ୍ରକାଶିନୀ, ଅନନ୍ତପ୍ରେମସ୍ୱରୂପା ଓ ମୋକ୍ଷଦାୟିନୀ, ସେହି ବୈଷ୍ଣବୀ ଦେବୀଙ୍କୁ ବନ୍ଦନା କରୁଛି ॥୧୦॥

କାଳରାତ୍ରିଂ ମହାରାତ୍ରିଂ ମୋହରାତ୍ରିଂ ତପସ୍ୱିନୀମ୍ ।
ସର୍ବଶାସ୍ତ୍ରମୟୀଂ ଦେବୀଂ ବନ୍ଦେ ଶକ୍ତିଂ ଯଶସ୍ୱିନୀମ୍ ।।୧୧।।

ମଧୁକୈଟଭସଂହର୍ତ୍ତ୍ରୀଂ କମଳାସନତାରିଣୀମ୍ ।
ଭୀମବକ୍ତ୍ରାଂ ମହାମାୟାଂ ବନ୍ଦେ ତାଂ ଶୂଳଧାରିଣୀମ୍ ।।୧୨।।

କରାଳାକ୍ଷୀଂ ଜୟାମୀଶାଂ ରକ୍ତବୀଜବିନାଶିନୀମ୍ ।
ଭୟଙ୍କରୀଂ ମହାକାଳୀଂ ବନ୍ଦେ ଶକ୍ତିପ୍ରକାଶିନୀମ୍ ।।୧୩।।

ଶକ୍ତିହସ୍ତାଂ ମହାରୂପାଂ ଚଣ୍ଡମୁଣ୍ଡବିନାଶିନୀମ୍ ।
ଶତ୍ରୁସଂହାରିଣୀଂ ବନ୍ଦେ ଧୂମ୍ରଲୋଚନନାଶିନୀମ୍ ।।୧୪।।

ଶରଣଂ ତ୍ରିଦିବେଶାନାଂ ମହିଷାସୁରମର୍ଦ୍ଦିନୀମ୍ ।
ସ୍ତୁତଂ କାଳିକାଂ ବନ୍ଦେ ସକଳକ୍ଷେମବର୍ଦ୍ଧିନୀମ୍ ।।୧୫।।

---

ଯେଉଁ ଦେବୀ କାଳରାତ୍ରି, ମହାରାତ୍ରି, ମୋହରାତ୍ରି, ସକଳବିଦ୍ୟାସ୍ୱରୂପିଣୀ, ତପସ୍ୱିନୀ ଓ କୀର୍ତ୍ତିମତୀ ଅଟନ୍ତି, ସେହି ଶକ୍ତିଙ୍କୁ ବନ୍ଦନା କରୁଛି ।।୧୧।।

ମଧୁ ଓ କୈଟଭ ରାକ୍ଷସଦ୍ୱୟଙ୍କ ସଂହାରକାରିଣୀ, ବ୍ରହ୍ମାଙ୍କ ରକ୍ଷାକର୍ତ୍ତ୍ରୀ, ଶୂଳଧାରିଣୀ ସେହି ଭୀମବଦନା ମହାମାୟାଙ୍କୁ ବନ୍ଦନା କରୁଛି ।।୧୨।।

କରାଳନୟନା, ରକ୍ତବୀଜରାକ୍ଷସର ବିନାଶକାରିଣୀ, ଭୟଙ୍କରୀ, ସ୍ୱଶକ୍ତିପ୍ରକାଶିନୀ, ବିଜୟସ୍ୱରୂପିଣୀ, ଈଶ୍ୱରୀ ମହାକାଳୀଙ୍କୁ ବନ୍ଦନା କରୁଛି ।।୧୩।।

ଅସ୍ତ୍ରହସ୍ତା, ମହାରୂପା, ଚଣ୍ଡ ଓ ମୁଣ୍ଡ ଦୁଇ ଦୈତ୍ୟଙ୍କ ବିନାଶକାରିଣୀ, ଦାନବ ଧୂମ୍ରଲୋଚନର ବିନାଶକର୍ତ୍ତ୍ରୀ, ଶତ୍ରୁସଂହାରକାରିଣୀ ଦୁର୍ଗାଙ୍କୁ ବନ୍ଦନା କରୁଛି ।।୧୪।।

ଦେବତାମାନଙ୍କର ଶରଣଦାୟିନୀ, ମହିଷାସୁରମର୍ଦ୍ଦିନୀ, ସମସ୍ତଙ୍କ କଲ୍ୟାଣକାରିଣୀ କାଳିକାଙ୍କୁ ସର୍ବଦା ବନ୍ଦନା କରୁଛି ।।୧୫।।

ଇନ୍ଦ୍ରିୟାଣାମଧିଷ୍ଠାତ୍ରୀ ଗାତ୍ରାଣାଂ ଯା ଚ ରକ୍ଷିକା ।
ନମସ୍ତସ୍ୟୈ ସମସ୍ତସ୍ୟୈ ନମସ୍ତସ୍ୟୈ ନମୋ ନମଃ ॥୧୬॥

ଶ୍ରୀହରିଃ ସର୍ବବିନ୍ନାଳଂ ସ୍ତୋତୁମଯାଳିକାଗୁଣାନ୍ ।
ପ୍ରସୀଦତି ମହାଦେବୀ ଭକ୍ତ୍ୟା ହୃଦ୍‌ଗତୟା ସଦା ॥୧୭॥

ନାସ୍ତ୍ୟୁପ୍ତତ୍ତିରନାଦିତ୍ୱାନ୍ମହାଦେବ୍ୟାଃ କଦାଚନ ।
ଜଗନ୍ମାତା ପରା ନିତ୍ୟା କାରଣାନାଂ ଚ କାରଣମ୍ ॥୧୮॥

ବର୍ତ୍ତତେ ସର୍ବଭୂତେଷୁ ଶକ୍ତିରୂପେଣ ମଙ୍ଗଳା ।
ଶବବଚ୍ଛକ୍ତିହୀନାସ୍ତୁ ପ୍ରାଣିନସ୍ତତ୍କୃପାଂ ବିନା ॥୧୯॥

ଦେବାନାଂ ମନୁଜାନାଂ ଚ ବିପତ୍ତୌ କାର୍ଯ୍ୟସିଦ୍ଧୟେ ।
ଆବିର୍ଭବତି କାଳେ ମା ଦୁର୍ଗା ଦୁର୍ଗତିନାଶିନୀ ॥୨୦॥

---

ଯିଏ ଇନ୍ଦ୍ରିୟମାନଙ୍କର ଅଧିଷ୍ଠାତ୍ରୀ ଦେବୀ ତଥା ଶରୀରର ଅବୟବମାନଙ୍କର ରକ୍ଷାକାରିଣୀ, ସେହି ଦୁର୍ଗାଙ୍କୁ ନମସ୍କାର, ତାଙ୍କୁ ବାରମ୍ବାର ନମସ୍କାର ॥୧୬॥

ସର୍ବଜ୍ଞ ଭଗବାନ୍ ଶ୍ରୀବିଷ୍ଣୁ ମା ଦୁର୍ଗାଙ୍କ ଗୁଣଗାନ କରିବାକୁ ଅସମର୍ଥ । ମହାଦେବୀ ଅନ୍ତରର ଭକ୍ତିଦ୍ୱାରା ସର୍ବଦା ପ୍ରସନ୍ନ ହୋଇଥା'ନ୍ତି ॥୧୭॥

ମହାଦେବୀଙ୍କର ଆଦି (ଆରମ୍ଭ) ନ ଥିବାରୁ ତାଙ୍କର କଦାପି ଉତ୍ପତ୍ତି ନାହିଁ । ଶ୍ରେଷ୍ଠ ଜଗଜ୍ଜନନୀ ନିତ୍ୟ ତଥା କାରଣମାନଙ୍କର କାରଣ ଅଟନ୍ତି ॥୧୮॥

ମଙ୍ଗଳା ସମସ୍ତ ପ୍ରାଣୀଙ୍କ ମଧ୍ୟରେ ଶକ୍ତି ରୂପରେ ବିଦ୍ୟମାନ । ତାଙ୍କ କୃପା ବିନା ପ୍ରାଣୀସମୂହ ଶବପରି ଶକ୍ତିହୀନ ହୋଇଯା'ନ୍ତି ॥୧୯॥

ଦେବତା ଓ ମନୁଷ୍ୟମାନଙ୍କ ବିପଦ ସମୟରେ ସେମାନଙ୍କ କାର୍ଯ୍ୟସିଦ୍ଧି ପାଇଁ ଦୁର୍ଗତିନାଶିନୀ ମା ଦୁର୍ଗା ଯଥାକାଳେ ଆବିର୍ଭୂତ ହୋଇଥାନ୍ତି ॥୨୦॥

ବିଦଧାତି ସ୍ୱରୂପଂ ସା ସ୍ୱେଚ୍ଛୟା ଭବରକ୍ଷିଣୀ ।
ନ ତୁ ଦୈବବଶା ଦେବୀ ଯଥା ସର୍ବେ ସୁରାସୁରାଃ ॥୨୧॥

ପ୍ରବୃତ୍ତା ପୁରୁଷାର୍ଥେନ ନୈବ କାଳବଶା ମୃଡା ।
ଚିଚ୍ଛକ୍ତିଃ ସର୍ବଜୀବେଷୁ ଦେବୀ ସଦସଦାତ୍ମିକା ॥୨୨॥

ପୁରୁଷଂ ନନ୍ଦୟତ୍ୟେକା କୃତ୍ୱା ବ୍ରହ୍ମାଣ୍ଡନାଟକମ୍ ।
ପୁରୁଷେ ମୋଦିତେ ସର୍ବଂ ସଂହରତ୍ୟତିରଂହସା ॥୨୩॥

ତ୍ୱନ୍ମହିମା ସ୍ତୁତୋ ବେଦେ ସର୍ବସ୍ତୁତ୍ୟେ ସୁଖପ୍ରଦେ ।
ବେଦାବେଦୌ ଭବାନି ତ୍ୱଂ ବିଦ୍ୟାବିଦ୍ୟେ ମହାବଳେ ॥୨୪॥

ଅଜାନଜେ ମହାରୌଦ୍ରେ ତିର୍ଯ୍ୟଗୂର୍ଦ୍ଧ୍ୱମଧୋଽସି ଚ ।
ଇନ୍ଦ୍ରାଗ୍ନୀ ଚ ବିଭର୍ଷି ତ୍ୱଂ ସୋମଂ ଚ ବୃଷବାହନେ ॥୨୫॥

---

ସଂସାରର ରକ୍ଷାକର୍ତ୍ତ୍ରୀ ସେ ନିଜ ଇଚ୍ଛା ଅନୁସାରେ ସ୍ୱରୂପକୁ ଧାରଣ କରନ୍ତି । ସକଳ ଦେବଦାନବଙ୍କ ପରି ଦେବୀ କଦାପି ଦୈବାଧୀନା ନୁହନ୍ତି ॥୨୧॥

ମୃଡା(ପାର୍ବତୀ) ନିଜର ପୁରୁଷାର୍ଥଦ୍ୱାରା ପ୍ରବୃତ୍ତ ହୋଇଥା'ନ୍ତି । ସେ କଦାପି କାଳର ଅଧୀନ ନୁହନ୍ତି । ସତ୍ ଓ ଅସତ୍ ଯାହାଙ୍କର ସ୍ୱରୂପ, ସେହି ଦେବୀ ଚେତନାଶକ୍ତିରୂପେ ସକଳ ଜୀବଙ୍କ ମଧ୍ୟରେ ଥା'ନ୍ତି ॥୨୨॥

ବ୍ରହ୍ମାଣ୍ଡ ନାଟକ କରି ଏକାକିନୀ ସେ ପୁରୁଷଙ୍କୁ ଆନନ୍ଦିତ କରିଥା'ନ୍ତି । ପୁରୁଷ ପ୍ରମୋଦିତ ହୁଅନ୍ତେ ସେ ଅତିବେଗରେ ସକଳ ସଂହାର କରନ୍ତି ॥୨୩॥

ସମସ୍ତଙ୍କର ସ୍ତୁତ୍ୟା, ସୁଖପ୍ରଦାୟିନୀ, ମହାଶକ୍ତି ହେ ମା ଭବାନି ! ତୋର ମହିମାଗାନ ବେଦରେ କରାଯାଇଛି । ତୁ ବେଦ ଓ ଅବେଦ, ତୁ ବିଦ୍ୟା ଓ ଅବିଦ୍ୟା ଅଟୁ ॥୨୪॥

ହେ ମହାଭୟଙ୍କରୀ ଦେବି ! ତୋର ଜନ୍ମ ନଥିଲେ ମଧ୍ୟ ଜନ୍ମ (ଆବିର୍ଭାବ) ରହିଛି । ତୁ ତିର୍ଯ୍ୟକ୍, ଉର୍ଦ୍ଧ୍ୱ ଓ ନିମ୍ନ ଅଟୁ । ହେ ବୃଷଭବାହନା ! ତୁ ଇନ୍ଦ୍ର, ଅଗ୍ନି ଓ ସୋମଙ୍କୁ ଧାରଣ କରିଛୁ ॥୨୫॥

ଅଶ୍ୱିନୌ ପାସି ବାରାହି ତ୍ୱଷ୍ଟୃପୂଷଭଗାଂସ୍ତଥା ।
ବିଷ୍ଣୁଂ ତ୍ରିବିକ୍ରମଂ ପାସି ବ୍ରହ୍ମାଣଂ ଚ ପ୍ରଜାପତିମ୍ ॥୨୬॥

ସାକ୍ଷାତ୍ତ୍ୱଂ ବ୍ରହ୍ମରୂପାଽସି ମାତଙ୍ଗି ଜଗଦୀଶ୍ୱରି ।
ପ୍ରଥମା ଯଜନୀୟେଷୁ ବ୍ୟୋମମାତା ତ୍ୱମେବ ଚ ॥୨୭॥

ଆତ୍ମସ୍ୱରୂପଧାରିଣ୍ୟାଂ ବୁଦ୍ଧିବୃତ୍ତୌ ପଦଂ ତବ ।
ଅଧ୍ୟାତ୍ମରୂପିଣୀ ଶକ୍ତିର୍ଭକ୍ତାନାଂ ମୁକ୍ତିଦାୟିନୀ ॥୨୮॥

ବ୍ରହ୍ମରୂପିଣି ମାଙ୍ଗଲ୍ୟେ ମାତସ୍ତ୍ୱଂ ସର୍ବକାରଣମ୍ ।
ଜଗଚ୍ଛୂନ୍ୟମଶୂନ୍ୟଂ ତ୍ୱଦବ୍ୟକ୍ତପୁରୁଷାତ୍ମକମ୍ ॥୨୯॥

ଆନନ୍ଦସ୍ତ୍ୱଂ ନିରାନନ୍ଦସ୍ତ୍ୱମେବ ଗିରିନନ୍ଦିନି ।
ବିଜ୍ଞାନଂ ତ୍ୱମବିଜ୍ଞାନଂ ତ୍ୱମେବ ନିଖିଳଂ ଜଗତ୍ ॥୩୦॥

---

ହେ ବାରାହି ! ତୁ ଅଶ୍ୱିନୀକୁମାରଯୁଗଳ, ତ୍ୱଷ୍ଟା, ପୂଷା ଓ ଭଗଙ୍କୁ ପାଳନ କରୁ। ପୁଣି ତ୍ରିବିକ୍ରମ ବିଷ୍ଣୁ ଓ ପ୍ରଜାପତି ବ୍ରହ୍ମାଙ୍କୁ ପାଳନ କରୁ॥୨୬॥

ହେ ଜଗଦୀଶ୍ୱରୀ ମାତଙ୍ଗି ! ତୁ ସାକ୍ଷାତ୍ ବ୍ରହ୍ମସ୍ୱରୂପିଣୀ ଅଟୁ। ତୁ ଯଜ୍ଞୀୟ ଦେବତାଙ୍କ ମଧ୍ୟରେ ପ୍ରଥମ ଅଟୁ। ତୁ ହିଁ ଆକାଶର ଜନନୀ ଅଟୁ॥୨୭॥

ଆତ୍ମସ୍ୱରୂପକୁ ଯେ ଧାରଣ କରିଥାଏ, ସେହି ବୁଦ୍ଧିବୃତ୍ତିରେ ତୁ ରହିଥାଉ। ତୁ ଭକ୍ତମାନଙ୍କ ମୋକ୍ଷକାରିଣୀ ଅଧ୍ୟାତ୍ମରୂପିଣୀ ଶକ୍ତି ଅଟୁ॥୨୮॥

ବ୍ରହ୍ମରୂପିଣୀ ସୌଭାଗ୍ୟଦାୟିନୀ ହେ ମାତା ! ତୁ ହିଁ ସମସ୍ତଙ୍କର କାରଣ ଅଟୁ। ପ୍ରକୃତି-ପୁରୁଷାତ୍ମକ, ଶୂନ୍ୟ ଓ ଅଶୂନ୍ୟ ଜଗତ୍ ତୋଠାରୁ ଉତ୍ପନ୍ନ ହୋଇଛି ॥୨୯॥

ହେ ଗିରିନନ୍ଦିନି ! ତୁ ହିଁ ଆନନ୍ଦ, ତୁ ହିଁ ନିରାନନ୍ଦ ଅଟୁ। ତୁ ହିଁ ବିଜ୍ଞାନ, ତୁ ହିଁ ଅବିଜ୍ଞାନ ଅଟୁ। ତୁ ହିଁ ସମଗ୍ର ଜଗତ୍ ଅଟୁ॥୩୦॥

ବ୍ରହ୍ମାଽସି ତ୍ୱଂ ମହାଶକ୍ତେ ତ୍ୱମବ୍ରହ୍ମ ହରପ୍ରିୟେ ।
ତ୍ୱମେବ ପଞ୍ଚଭୂତଂ ମାଽପଞ୍ଚଭୂତଂ ତଥାମ୍ବିକେ ।।୩୧।।

ଜିହ୍ୱାୟା ବିଷୟୋ ମାତର୍ବିଦିତା ମଧୁମାଧୁରୀ ।
ଶମ୍ଭୁଦୃଗ୍‌ବିଷୟଂ ରୂପଂ ତବ ବକ୍ଷ୍ୟାମି ବା କଥମ୍ ।।୩୨।।

ନେତ୍ରୟୋଃ କଜ୍ଜଳଂ ଭାତି ତାମ୍ବୂଳଂ ଭାତି ତେ ମୁଖେ ।
ଲଲାଟେ ଭାତି କାଶ୍ମୀରଂ ମୌକ୍ତିକସ୍ରଗ୍ ଗଳେ ତବ ।।୩୩।।

କଟୀତଟେ ସ୍ଫୁରତ୍କାଞ୍ଚୀ ଶାଟୀ ବିଭ୍ରାଜତେ ରମେ ।
କର୍ଣ୍ଣୟୋଃ କୁଣ୍ଡଳଂ ଭାତି ମନ୍ଦାରଂ ଭାତି ବକ୍ଷସି ।।୩୪।।

ନତାଙ୍ଗ୍ୟବ୍ଜମୁଖୀ ଦେବୀ ସୁନ୍ଦରୀ ଗୁରୁଗାମିନୀ ।
ପୀତାମ୍ବରା ତଡ଼ିତ୍ପ୍ରୀତା ନାନାଲଙ୍କାରମଣ୍ଡିତା ।।୩୫।।

---

ହେ ହରପ୍ରିୟା ମହାଶକ୍ତି ମା ଅମ୍ବିକା ! ତୁ ହିଁ ବ୍ରହ୍ମ, ତୁ ହିଁ ଅବ୍ରହ୍ମ ଅଟୁ । ତୁ ହିଁ ପଞ୍ଚଭୂତ, ତୁ ହିଁ ଅପଞ୍ଚଭୂତ ଅଟୁ ।।୩୧।।

ହେ ମା ! ଜିହ୍ୱାର ବିଷୟ ମଧୁର ମାଧୁର୍ଯ୍ୟ ବୋଲି ସମସ୍ତେ ଜାଣନ୍ତି । ଶମ୍ଭୁଙ୍କ ନୟନର ବିଷୟ ତୋର ରୂପକୁ ମୁଁ କିପରି ବା ବର୍ଣ୍ଣନା କରିପାରିବି ?।।୩୨।।

ତୋର ଦୁଇ ନେତ୍ରରେ କଜ୍ଜଳ ଓ ମୁଖରେ ତାମ୍ବୂଳ ଶୋଭାପାଉଛି । ତୋ କପାଳରେ କୁଙ୍କୁମ ଓ ଗଳାରେ ମୁକ୍ତାମାଳା ଶୋଭାପାଉଛି ।।୩୩।।

ହେ ମା ରମା ! ତୋ କଟୀର ନିମ୍ନଭାଗରେ ପାଟଶାଢ଼ୀ ଓ ତା' ଉପରେ ଉଜ୍ଜ୍ୱଳ ରତ୍ନମୟୀ ମେଖଳା (ଅଣ୍ଟାସୂତା) ଶୋଭାପାଉଛି । ତୋ କର୍ଣ୍ଣଦ୍ୱୟରେ କୁଣ୍ଡଳ ଓ ବକ୍ଷରେ ମନ୍ଦାରମାଳା ଶୋଭାପାଉଛି ।।୩୪।।

ଦେବୀ ତୁ ଅବନତାଙ୍ଗୀ, କମଳବଦନା, ଗୁରୁଗାମିନୀ, ପୀତବସନା, ବିଦ୍ୟୁତ୍‌ପରି ପୀତବର୍ଣ୍ଣା ଓ ନାନା ଅଳଙ୍କାରରେ ମଣ୍ଡିତା ହୋଇଥିବାରୁ ଅତି ସୁନ୍ଦରୀ ଅଟୁ ।।୩୫।।

ଖଡ୍‌ଗିନୀ ଶୂଳିନୀ ଘୋରା ଗଦିନୀ ଚକ୍ରିଣୀ ତଥା ।
କମ୍ବୁକାର୍ମୁକହସ୍ତାବ୍ଜା ଭୁଶୁଣ୍ଡୀପରିଘାଶୁଗା ॥୩୬॥

ଅକ୍ଷସ୍ରଗ୍‌ଦଣ୍ଡବଜ୍ରାଣି ସାରସଂ ଚର୍ମକୁଣ୍ଡିକାମ୍ ।
ପରଶୁଂ ପାଶଘଣ୍ଟେ ଚ ଦଧତୀ ନିତ୍ୟଶୋଭିତା ॥୩୭॥

ଦନୁଜାନାଂ ବିନାଶାୟ ଦେବାନାଂ ରକ୍ଷଣାୟ ଚ ।
ଧତ୍ସେ ଶସ୍ତ୍ରାଣ୍ୟନେକାନି ଭୁଜେଷୁ ରଣକାମିନୀ ॥୩୮॥

ଦେବି ମୋହନରୂପା ତ୍ୱଂ ଦିବ୍ୟାଭରଣରାଜିତା ।
ଦିବ୍ୟେନ୍ଦୁବଦନା ରାମା ଶରତ୍ପଙ୍କଜଲୋଚନା ॥୩୯॥

ହିମାଂଶୁଶେଖରା ରମ୍ୟା ବିଦ୍ୟୁଦ୍ଦାମସମପ୍ରଭା ।
ସିଂହପୃଷ୍ଠସମାରୂଢ଼ା ନେତ୍ରତ୍ରୟସୁଶୋଭିତା ॥୪୦॥

---

କରକମଳମାନଙ୍କରେ ଖଡ୍‌ଗ; ତ୍ରିଶୂଳ, ଗଦା, ଚକ୍ର, ଶଙ୍ଖ, ଧନୁଶର, ଭୁଶୁଣ୍ଡୀ (ଆଗ୍ନେୟାସ୍ତ୍ର ବିଶେଷ), ମୁଦ୍‌ଗର ଥିବାରୁ ତୋର ରୂପ ଭୟଙ୍କର ॥୩୬॥

ହସ୍ତମାନଙ୍କରେ ରୁଦ୍ରାକ୍ଷମାଳା, ଦଣ୍ଡ, ବଜ୍ର, ପଦ୍ମଫୁଲ, ଚର୍ମକମଣ୍ଡଳୁ, ପରଶୁ, ପାଶ ଓ ଘଣ୍ଟା ଧାରଣ କରି ସର୍ବଦା ଶୋଭାପାଉଛୁ ॥୩୭॥

ରାକ୍ଷସମାନଙ୍କର ବିନାଶ ଓ ଦେବତାମାନଙ୍କର ରକ୍ଷାନିମିତ୍ତ ରଣକାମିନୀ ତୁ ଭୁଜମାନଙ୍କରେ ନାନାବିଧ ଅସ୍ତ୍ରଶସ୍ତ୍ର ଧାରଣ କରିଛୁ ॥୩୮॥

ହେ ଦେବି ! ତୁ ଦିବ୍ୟ ଅଳଙ୍କାରରେ ଶୋଭିତା, ଦିବ୍ୟଚନ୍ଦ୍ରପରି ତୋର ମୁଖ, ଶରତ୍‌ଋତୁର ପଦ୍ମପରି ତୋର ନୟନ ହୋଇଥିବାରୁ ତୋର ରୂପ ଆକର୍ଷଣୀୟ ଓ ଆନନ୍ଦଦାୟକ ॥୩୯॥

ତୋର ମସ୍ତକରେ ଚନ୍ଦ୍ର ଶୋଭାପାଉଛି, ବିଜୁଳିର ଝଲକପରି ତୋର ଶରୀର ଦୀପ୍ତିମୟ, ସିଂହପୃଷ୍ଠରେ ତୁ ଆରୂଢ଼ା ଓ ତିନି ଚକ୍ଷୁଦ୍ୱାରା ଅତ୍ୟନ୍ତ ଶୋଭିତା; ଏଣୁ ତୋର ରୂପ ରମଣୀୟ ॥୪୦॥

ମଞ୍ଜୀରାଙ୍କିତପାଦାବ୍ଜା ମଞ୍ଜୁବସ୍ତ୍ରବିଭୂଷଣା ।
ପଦାଙ୍ଗୁଳିଜିତାନଙ୍ଗା ସସ୍ମିତା ଚ ସୁମଧ୍ୟମା ॥୪୧॥

ତୁଷ୍ଟା ହଂସି ରୁଜାଃ ସର୍ବା ରୁଷ୍ଟା ହଂସି ମନୋରଥାନ୍ ।
ମାତସ୍ତ୍ୱଦାଶ୍ରିତାନାଂ ହି ନରାଣାଂ ନାସ୍ତ୍ୟମଙ୍ଗଳମ୍ ॥୪୨॥

ସତ୍ତ୍ୱରୂପା ରଜୋରୂପା ତମୋରୂପା ଗୁଣାତ୍ମିକା ।
ବ୍ରହ୍ମାଚ୍ୟୁତମହାଦେବାଃ ସମ୍ଭୂତା ହି ଗୁଣତ୍ରୟାତ୍ ॥୪୩॥

ଦେବି ସ୍ୱକଳୟା ବିଶ୍ୱଂ ଶଶ୍ୱତ୍ସୃଜସି ପାସି ଚ ।
ବିନାଶୟସି ଲୋକଂ ଚ କାଳେ ସଂହାରକାରିଣୀ ॥୪୪॥

ବିହାୟ ତବ ସାମୀପ୍ୟଂ ସତ୍ସୁଖଂ କୋ ଲଭେତ ବା ।
ବିନା ତେ ପାଦପଦ୍ମଂ ନ ଜନ୍ମମୃତ୍ୟୁବିମୋଚନମ୍ ॥୪୫॥

---

ତୋର ପାଦପଦ୍ମ ନୂପୁରରେ ଶୋଭିତ, ମନୋରମ ବସ୍ତ୍ର ଓ ଅଳଙ୍କାରରେ ତୁ ବିଭୂଷିତା, ତୋର ପାଦର ଅଙ୍ଗୁଳିର ସୌନ୍ଦର୍ଯ୍ୟ କାମଦେବଙ୍କୁ ମଧ୍ୟ ଜିଣିଯାଇଛି, ତୁ ସ୍ମିତହାସିନୀ, ତୋର କଟୀ ସୁନ୍ଦର ॥୪୧॥

ହେ ମାତା ! ତୁ ପ୍ରସନ୍ନ ହେଲେ ସମସ୍ତ ରୋଗର ବିନାଶ କରୁ; କ୍ରୁଦ୍ଧ ହେଲେ ତୁ ପ୍ରାଣୀଙ୍କ ସମସ୍ତ ମନସ୍କାମନାକୁ ନଷ୍ଟ କରିଦେଉ । ତୋର ଆଶ୍ରିତ ମନୁଷ୍ୟମାନଙ୍କର କୌଣସି ଅମଙ୍ଗଳ ଘଟେ ନାହିଁ ॥୪୨॥

ତୁ ସତ୍ତ୍ୱରୂପିଣୀ, ରଜୋରୂପିଣୀ ଓ ତମୋରୂପିଣୀ ହୋଇଥିବାରୁ ତ୍ରିଗୁଣାତ୍ମିକା ଅଟୁ । ବ୍ରହ୍ମା, ବିଷ୍ଣୁ ଓ ମହେଶ୍ୱର ଏହି ଗୁଣତ୍ରୟରୁ ସମ୍ଭୂତ ହୋଇଛନ୍ତି ॥୪୩॥

ହେ ଦେବି ! ତୁ ନିଜ କଳାରେ ସର୍ବଦା ବିଶ୍ୱର ସୃଷ୍ଟି ଓ ପାଳନ କରୁଛୁ । ସଂହାରକାରିଣୀ ତୁ ଯଥାକାଳରେ ସଂସାରର ବିନାଶ ମଧ୍ୟ କରିଥାଉ ॥୪୪॥

ତୋର ସାନ୍ନିଧ୍ୟ ଛାଡ଼ି କିଏ ବା ପ୍ରକୃତ ସୁଖ ପାଇପାରିବ ? ତୋ ପଦକମଳର ଶରଣ ବିନା ଜନ୍ମମୃତ୍ୟୁରୁ ମୁକ୍ତି ନାହିଁ ॥୪୫॥

मुनयो निरताः सन्ति शुद्धचित्तास्तपःसु ये ।
नाधिगच्छन्ति ते मोक्षं मातस्त्वत्करुणां विना ॥४६॥

नाप्यते शाश्वती मुक्तिस्तपोदमसमाधिभिः ।
भाग्यवांस्तत्पदं याति त्वदङ्घ्रिरजसा शिवे ॥४७॥

त्वं स्वाहा त्वं वषट्कारः स्वधा त्वं च स्वरात्मिका ।
अर्द्धमात्राऽक्षरं त्वं च त्रिधा मात्रात्मिका स्थिता ॥४८॥

महास्मृतिर्महामेधा गुणत्रयविभाविनी ।
त्वमेव श्रीस्त्वमेव ह्रीस्त्वं मतिर्ज्ञानलक्षणा ॥४९॥

त्वं देवी सर्वभूतेषु विष्णुमायेति शंसिता ।
संस्थिता बुद्धिरूपेण चेतनेत्यभिधीयसे ॥५०॥

---

ହେ ମା ! ଯେଉଁ ନିର୍ମଳହୃଦୟ ମୁନିଗଣ ତପସ୍ୟାରତ ଥାଆନ୍ତି, ସେମାନେ ତୋ କରୁଣା ବିନା ମୋକ୍ଷଲାଭ କରିପାରନ୍ତି ନାହିଁ ॥୪୬॥

ହେ ଶିବାନି ! ତପସ୍ୟା, ଆତ୍ମସଂଯମ ଓ ସମାଧିଦ୍ୱାରା ଶାଶ୍ୱତମୁକ୍ତି ମିଳେ ନାହିଁ । ତୋ ଚରଣରଜଦ୍ୱାରା ଭାଗ୍ୟବାନ୍ ବ୍ୟକ୍ତି ସେହି ପରମପଦ (ମୋକ୍ଷ) ଲାଭ କରିଥାଏ ॥୪୭॥

ତୁ ସ୍ୱାହା, ବଷଟ୍ ଓ ସ୍ୱଧା ଅଟୁ । ତୁ ହିଁ ସ୍ୱର ଓ ଅକ୍ଷର ଅଟୁ । ତୁ ହିଁ ଅର୍ଦ୍ଧମାତ୍ରା ଅଟୁ । ତୁ ତ୍ରିବିଧ ମାତ୍ରା (ଅର୍ଦ୍ଧମାତ୍ରା, ଏକମାତ୍ରା ଓ ଦ୍ୱିମାତ୍ରା) ଭାବେ ବିଦ୍ୟମାନ ॥୪୮॥

ତ୍ରିଗୁଣସୃଷ୍ଟିକାରିଣୀ ତୁ ମହାସ୍ମୃତି ଓ ମହାମେଧା ଅଟୁ । ତୁ ହିଁ ଶ୍ରୀ ଓ ହ୍ରୀ (ଲଜ୍ଜା) ଅଟୁ । ତୁ ହିଁ ମତି ଓ ଜ୍ଞାନ ଅଟୁ ॥୪୯॥

ଦେବୀ ତୁ ସମସ୍ତ ପ୍ରାଣୀଙ୍କ ମଧ୍ୟରେ ବିଷ୍ଣୁମାୟାରୂପେ ସ୍ତୁତ ହୋଇଛୁ । ସକଳପ୍ରାଣୀଙ୍କ ମଧ୍ୟରେ ବୁଦ୍ଧି ରୂପରେ ଅବସ୍ଥିତା ଓ ଚେତନା ବୋଲି ଅଭିହିତା ॥୫୦॥

ତ୍ୱଂ ଦେବୀ ସର୍ବଜୀବେଷୁ ନିଦ୍ରାରୂପେଣ ସଂସ୍ଥିତା ।
ତ୍ୱଂ ଚ ଛାୟାକ୍ଷୁଧାରୂପା ଶକ୍ତିରୂପା କୃପାମୟି ॥୫୧॥

ତୃଷ୍ଣାରୂପା କ୍ଷମାରୂପା ଶାନ୍ତିରୂପା ଶିବପ୍ରିୟେ ।
ଶ୍ରଦ୍ଧାରୂପେଣ ଦେବୀ ତ୍ୱଂ ଲଜ୍ଜାରୂପେଣ ସଂସ୍ଥିତା ॥୫୨॥

ଭ୍ରାଜସେ କାନ୍ତିରୂପେଣ ଲକ୍ଷ୍ମୀରୂପେଣ ମଙ୍ଗଳେ ।
ସ୍ମୃତିବୃତ୍ତିସ୍ୱରୂପେଣ ତ୍ୱମୀଶ୍ୱରି ବିରାଜସେ ॥୫୩॥

ଚିତିଭ୍ରାନ୍ତିସ୍ୱରୂପେଣ ତୁଷ୍ଟିରୂପେଣ ଚଣ୍ଡିକେ ।
ସଂସ୍ଥିତା ମାତୃରୂପେଣ ବ୍ୟାପ୍ୟ କୃତ୍ସ୍ନଂ ଜଗତ୍ ସ୍ଥିତା ॥୫୪॥

ବିନା ତେ ଧାରଣାଶକ୍ତିଂ କୂର୍ମନାଗୌ କଥଂ କ୍ଷମୌ ।
ମହତୀଂ ପୃଥିବୀଂ ବୋଢୁଂ ମାତର୍ବ୍ରହ୍ମାଣ୍ଡଧାରିଣି ॥୫୫॥

---

ଦେବୀ ତୁ ସକଳ ଜୀବଙ୍କ ମଧ୍ୟରେ ନିଦ୍ରାରୂପରେ ବାସ କରୁଛୁ । ହେ କୃପାମୟି ! ତୁ ଛାୟା, କ୍ଷୁଧା ଓ ଶକ୍ତିରୂପରେ ଅବସ୍ଥିତା ॥୫୧॥

ହେ ଶିବପ୍ରିୟା ! ତୁ ଦେବୀ ତୃଷ୍ଣା, କ୍ଷମା, ଶାନ୍ତି, ଶ୍ରଦ୍ଧା ଓ ଲଜ୍ଜା ରୂପରେ ସମସ୍ତଙ୍କ ମଧ୍ୟରେ ବିରାଜିତା ॥୫୨॥

ହେ ମଙ୍ଗଳା ! କାନ୍ତି ଓ ଲକ୍ଷ୍ମୀ ରୂପରେ ତୁ ଶୋଭିତା । ହେ ଈଶ୍ୱରି ! ତୁ ସ୍ମୃତି ଓ ବୃତ୍ତିରୂପେ ବିରାଜିତା ॥୫୩॥

ହେ ଚଣ୍ଡିକା ! ତୁ ଚିତି (ବୋଧଶକ୍ତି), ଭ୍ରାନ୍ତି ଓ ତୁଷ୍ଟି ରୂପରେ ସଂସ୍ଥିତା । ମାତୃରୂପେ ସମଗ୍ର ଜଗତ୍‌କୁ ବ୍ୟାପି ତୁ ଅବସ୍ଥିତା ॥୫୪॥

ହେ ବ୍ରହ୍ମାଣ୍ଡଧାରିଣୀ ଜନନି ! ତୋର ଧାରଣାଶକ୍ତି ବିନା କୂର୍ମ ଓ ଶେଷନାଗ ବିଶାଳ ପୃଥିବୀକୁ ବହନ କରିବାକୁ କିପରି ସମର୍ଥ ହୁଅନ୍ତେ ? ॥୫୫॥

ପୃଥ୍ୱୀରୂପେଣ ଚେନ୍ନାଽସି ଜଗତ୍ କୁତ୍ର ଚରାଚରମ୍ ।
ଆଶ୍ରୟଂ ଲପ୍ସ୍ୟତେ ମାତଃ ଶିବେ ଶରଣଦାୟିନି ॥୫୬॥

ଯେ ସ୍ତୁବନ୍ତ୍ୟମରାନ୍ମର୍ତ୍ତ୍ୟା ବ୍ରହ୍ମବିଷ୍ଣୁମହେଶ୍ୱରାନ୍ ।
ମାୟୟା ମୋହିତାସ୍ତେ ହି ତ୍ୱଚ୍ଛକ୍ତ୍ୟା ପ୍ରବଳାଃ ସୁରାଃ ॥୫୭॥

ଦେବାସୁରମନୁଷ୍ୟେଭ୍ୟୋ ଦଦସେ ନିତ୍ୟଜୀବନମ୍ ।
ନାରାଧିତା କଦା ନୀଚୈଃ କଳିତା ତୁ ମୁମୁକ୍ଷୁଭିଃ ॥୫୮॥

ମାୟା ଜାନାତି ନ ତ୍ୱାଂ ଚ ମାୟାୟାଂ ସତତଂ ସ୍ଥିତାମ୍ ।
ଅନ୍ତଃସ୍ଥା ପ୍ରେରୟିତ୍ରୀ ତ୍ୱଂ କଲ୍ୟାଣୀ ଶାନ୍ତିଦାୟିନୀ ॥୫୯॥

ଧ୍ୟାୟନ୍ତି ତବ ପାଦାବ୍ଜଂ ବିଷ୍ଣୁଶମ୍ଭୁବିରଞ୍ଚୟଃ ।
ନ ତ୍ୱାଂ ସ୍ମରନ୍ତି ମୂଢ଼ାସ୍ତୁ ପତନ୍ତି ଭବସାଗରେ ॥୬୦॥

---

ହେ ଶରଣଦାୟିନୀ ମାତା ଶିବାନି ! ତୁ ଯଦି ପୃଥିବୀ ରୂପରେ ନ ଥା'ନ୍ତୁ, ତେବେ ଏହି ଚରାଚର ଜଗତ୍ କେଉଁଠି ଆଶ୍ରୟ ପାଆନ୍ତା ? ॥୫୬॥

ଯେଉଁ ମନୁଷ୍ୟମାନେ ବ୍ରହ୍ମା, ବିଷ୍ଣୁ ଓ ମହେଶ୍ୱର ତଥା ଅନ୍ୟ ଦେବତାମାନଙ୍କୁ ସ୍ତୁତି କରନ୍ତି, ସେମାନେ ସମସ୍ତେ ମାୟାରେ ମୋହିତ ଅଟନ୍ତି; ଯେହେତୁ ଦେବଗଣ ତୋ ଶକ୍ତିରେ ହିଁ ଅତି ବଳବାନ୍ ଅଟନ୍ତି ॥୫୭॥

ଦେବତା, ଅସୁର ଓ ମନୁଷ୍ୟମାନଙ୍କୁ ତୁ ଶାଶ୍ୱତଜୀବନ ପ୍ରଦାନ କରିଥାଉ । ନୀଚଜନ କେବେ ତୋର ଆରାଧନା କରନ୍ତି ନାହିଁ। ମୁମୁକ୍ଷୁ ମନୁଷ୍ୟ ତୋର ଧ୍ୟାନ କରିଥା'ନ୍ତି ॥୫୮॥

ମାୟାରେ ସର୍ବଦା ଅବସ୍ଥିତା ହୋଇଥିଲେ ମଧ୍ୟ ମାୟା ତୋତେ ଜାଣିପାରେ ନାହିଁ। କଲ୍ୟାଣୀ ଶାନ୍ତିଦାୟିନୀ ତୁ ହୃଦୟରେ ରହି ପ୍ରେରଣା ଦେଇଥାଉ ॥୫୯॥

ବ୍ରହ୍ମା, ବିଷ୍ଣୁ ଓ ମହେଶ୍ୱର ତୋର ପାଦପଦ୍ମକୁ ଧ୍ୟାନ କରିଥା'ନ୍ତି, କିନ୍ତୁ ଅଜ୍ଞାନୀ ବ୍ୟକ୍ତି ତୋତେ ସ୍ମରଣ କରନ୍ତି ନାହିଁ; ଯଦ୍ୱାରା ଭବସାଗରରେ ପତିତ ହୁଅନ୍ତି ॥୬୦॥

ତ୍ୱତ୍ପାଦପଙ୍କଜଂ ସ୍ମୃତ୍ୱା ମାତଃ ସୃଜତି ପଦ୍ମଜଃ ।
ପରିପାତି ହୃଷୀକେଶଃ କାଳେ ସଂହରତେ ହରଃ ।।୬୧।।

ଆରାଧ୍ୟ ତ୍ୱାଂ ପୁରା ବିଷ୍ଣୁର୍ଭକ୍ତାନାଂ ଭାଗ୍ୟଦାୟିନି ।
ଅକରୋଚ୍ଛଙ୍କରଂ କ୍ଷୁବ୍ଧଂ ନାରୀ ଭୂତ୍ୱା ସୁରପ୍ରିୟେ ।।୬୨।।

ପୁଷ୍ପଧନ୍ୱାଽପି ନତ୍ୱା ତ୍ୱାଂ ବପୁଷା ହାରିଣା ଭୃଶମ୍ ।
ମୁନୀନାଂ ମହତାଂ ଚିତ୍ତମହରତ୍ ପରମେଶ୍ୱରି ।।୬୩।।

ସମସ୍ତଜଗତାଂ ହେତୁରପାରା ଚ ହରାଦିଭିଃ ।
ରାଜରାଜେଶ୍ୱରୀ ମାତା ଦେବୀ ତ୍ରିପୁରସୁନ୍ଦରୀ ।।୬୪।।

ଅଭ୍ୟସ୍ୟସେ ମୃଡାନି ତ୍ୱଂ ଦେବୀ ଭଗବତୀ ପରା ।
ନିଗୃହୀତେନ୍ଦ୍ରିୟୈଃ ସର୍ବୈରସ୍ତଦୋଷୈସ୍ତପସ୍ୱିଭିଃ ।।୬୫।।

---

ହେ ମାତା ! ତୋର ଚରଣାରବିନ୍ଦକୁ ସ୍ମରଣ କରି ବ୍ରହ୍ମା ସୃଷ୍ଟି କରନ୍ତି, ବିଷ୍ଣୁ ପାଳନ କରନ୍ତି ଓ ମହେଶ୍ୱର ଯଥାସମୟରେ ସଂହାର କରନ୍ତି ।।୬୧।।

ଭକ୍ତମାନଙ୍କର ଭାଗ୍ୟପ୍ରଦାୟିନୀ, ଦେବପ୍ରିୟା ହେ ଜନନି ! ପୂର୍ବକାଳରେ ବିଷ୍ଣୁ ତୋର ଆରାଧନା କରି, ନାରୀରୂପ ଧାରଣକରି ଶିବଙ୍କୁ ବିଚଳିତ କରିଥିଲେ ।।୬୨।।

ହେ ପରମେଶ୍ୱରି ! କନ୍ଦର୍ପ ମଧ୍ୟ ତୋତେ ପ୍ରଣାମ କରି ନିଜର ମନୋହର ଶରୀରଦ୍ୱାରା ମହାନ୍ ମୁନିଋଷିଙ୍କର ମନକୁ ହରଣ କରିପାରିଥିଲେ ।।୬୩।।

ସମସ୍ତ ଜଗତର ତୁ କାରଣ । ଶଙ୍କର ପ୍ରଭୃତି ଦେବଗଣ ତୋତେ ଅତିକ୍ରମ କରିପାରନ୍ତି ନାହିଁ । ତୁ ମାତା ରାଜରାଜେଶ୍ୱରୀ ଓ ଦେବୀ ତ୍ରିପୁରସୁନ୍ଦରୀ ଅଟୁ ।।୬୪।।

ହେ ମୃଡାନି ! ତୁ ପରାଶକ୍ତି ଦେବୀ ଭଗବତୀ ଅଟୁ । ସମସ୍ତ ନିଷ୍ପାପ ତପସ୍ୱୀଗଣ ଇନ୍ଦ୍ରିୟସଂଯମପୂର୍ବକ ତୋର ସାଧନା କରିଥା'ନ୍ତି ।।୬୫।।

ବିମଳର୍ଗ୍ୟକୁଷାଂ ସାମ୍ନାଂ ନିଧାନମଖିଳେଶ୍ୱରି ।
ଶ୍ରୁତିସ୍ମୃତିପୁରାଣାନାଂ ବୀଜଂ ତ୍ୱଂ ବାଗଧୀଶ୍ୱରି ॥୬୬॥

ତ୍ୱମଗ୍ନିସ୍ତ୍ୱଂ ମନୋ ବ୍ୟୋମ ମରୁତଃ ପୃଥିବୀ ଜଳମ୍ ।
ତ୍ୱୟି ସ୍ୟାନ୍ନିହିତଂ ସର୍ବଂ ପରଂ ନାସ୍ତି ଭବପ୍ରିୟେ ॥୬୭॥

ବିଜ୍ଞାତାଖିଳଶାସ୍ତ୍ରାଽସି ମେଧା ତ୍ୱଂ ଶାରଦା ସତୀ ।
ଭବସାଗରନୌରୂପା ନଗେଶପ୍ରିୟନନ୍ଦିନି ॥୬୮॥

ସୁଭକ୍ତ୍ୟା ଯେ ଭଜନ୍ତି ତ୍ୱାଂ ତେଷାଂ ବିଦ୍ୟାଯଶଃପ୍ରଦା ।
ସୁତବିତ୍ତକଳତ୍ରାଣି ଲବ୍ଧ୍ୱା ତେ ସନ୍ତି ମାନିତାଃ ॥୬୯॥

ଧର୍ମଂ ଚରତି ପୁଣ୍ୟାତ୍ମା ଗିରିଜେ ତ୍ୱତ୍ପ୍ରସାଦତଃ ।
ତତଃ ପ୍ରଯାତି ଚ ସ୍ୱର୍ଗଂ ତ୍ରୈଲୋକ୍ୟଫଳଦେ ମୃଡେ ॥୭୦॥

---

ହେ ସର୍ବେଶ୍ୱରି ! ଋକ୍, ଯଜୁଃ ଓ ସାମମନ୍ତ୍ରମାନଙ୍କର ତୁ ଅଧିଷ୍ଠାନ ଅଟୁ । ହେ ବାଗ୍‌ଦେବି ! ବେଦ, ସ୍ମୃତିଶାସ୍ତ୍ର ଓ ପୁରାଣମାନଙ୍କର ତୁ ବୀଜ ଅଟୁ ॥୬୬॥

ହେ ଶଙ୍କରବଲ୍ଲଭା ! ତୁ ହିଁ କ୍ଷିତି, ଅପ୍, ତେଜ, ମରୁତ୍, ବ୍ୟୋମ ଓ ମନ ଅଟୁ । ତୁ ହିଁ ସକଳ ନିଧାନ ଅଟୁ; ଅନ୍ୟ କେହି ନୁହେଁ ॥୬୭॥

ହେ ଗିରିରାଜଙ୍କ ପ୍ରିୟନନ୍ଦିନି ! ଶାରଦାରୂପରେ ତୁ ମେଧା, ସକଳଶାସ୍ତ୍ରବିଜ୍ଞାତ୍ରୀ ତଥା ଭବସାଗରତାରଣ ପାଇଁ ନୌକାସ୍ୱରୂପା ଅଟୁ ॥୬୮॥

ଯେଉଁମାନେ ପ୍ରକୃତ ଭକ୍ତିରେ ତୋର ଭଜନ କରନ୍ତି, ସେମାନଙ୍କୁ ତୁ ବିଦ୍ୟା ଓ ଯଶ ଦେଇଥାଉ । ସେମାନେ (ତୋ କୃପାରୁ) ପତ୍ନୀ, ପୁତ୍ର, ଧନ ଆଦି ଲାଭକରି ଆଦୃତ ହୋଇଥାନ୍ତି ॥୬୯॥

ହେ ପାର୍ବତି ! ହେ ତ୍ରିଭୁବନର ଫଳପ୍ରଦାୟିନୀ ମୃଡାନି ! ତୋ କୃପାରୁ ପୁଣ୍ୟାତ୍ମା ଧର୍ମ ଆଚରଣ କରିଥାଏ । ତେଣୁ ସେ ସ୍ୱର୍ଗଲାଭ କରିଥାଏ ॥୭୦॥

ଦୀନାନାଥସ୍ତୁତେ ଦେବି ଭକ୍ତାନୁଗ୍ରହକାରିଣି ।
ପରାତ୍ପରେଽଖିଳବ୍ୟାପ୍ତେ ପ୍ରକାମଂ ହି ନମୋଽସ୍ତୁ ତେ ॥୭୧॥

ତ୍ୱମେବ କମଳା ଦେବି ସାବିତ୍ରୀ ଚ ସରସ୍ୱତୀ ।
ତ୍ୱମେବ ସକଳା ମାତସ୍ତ୍ରିକାଳଜ୍ଞାନଦାୟିନୀ ॥୭୨॥

ଇଚ୍ଛାଶକ୍ତିଃ କ୍ରିୟାଶକ୍ତିର୍ଜ୍ଞାନଶକ୍ତିସ୍ତ୍ରିଶକ୍ତିଦା ।
ପରମା ତ୍ୱଂ ପରାଶକ୍ତିଃ ସର୍ବଶକ୍ତିପ୍ରଦାୟିନୀ ॥୭୩॥

ଦିବ୍ୟରୂପା ମହାରୂପା ଦୀପ୍ତିରୂପା ସନାତନୀ ।
ଦୋଷାପହା ତ୍ରିତାପଘ୍ନୀ ମହାପାପପ୍ରଣାଶିନୀ ॥୭୪॥

କାମଦା ଯୋଗମାୟା ତ୍ୱଂ ପ୍ରଣତାର୍ତ୍ତିବିନାଶିନୀ ।
ହର ତ୍ୱଂ ଦେବି ଦୁଃଖାନି ବରଦା ହରଭାମିନୀ ॥୭୫॥

---

ଦୀନ ଓ ଅନାଥମାନଙ୍କ ସ୍ତୁତ୍ୟା, ଭକ୍ତମାନଙ୍କ ଅନୁଗ୍ରହକାରିଣୀ, ପରାତ୍ପରା, ସର୍ବବ୍ୟାପିନୀ ହେ ଦେବି ! ତୋତେ ବାରମ୍ବାର ନମସ୍କାର ॥୭୧॥

ହେ ଦେବି ! ତୁ ହିଁ ଲକ୍ଷ୍ମୀ, ସାବିତ୍ରୀ ଓ ସରସ୍ୱତୀ । ହେ ମାତା ! ତ୍ରିକାଳର ଜ୍ଞାନଦାତ୍ରୀ ତୁ ସବୁକିଛି ଅଟୁ ॥୭୨॥

ତ୍ରିଶକ୍ତିପ୍ରଦାୟିନୀ ତୁ ଇଚ୍ଛାଶକ୍ତି, କ୍ରିୟାଶକ୍ତି ଓ ଜ୍ଞାନଶକ୍ତି ଅଟୁ । ସର୍ବଶକ୍ତିପ୍ରଦାୟିନୀ ତୁ ଶ୍ରେଷ୍ଠ ପରାଶକ୍ତି ଅଟୁ ॥୭୩॥

ତୋର ରୂପ ଦିବ୍ୟ, ଦୀପ୍ତିମୟ ଓ ମହାନ୍ । ଚିରନ୍ତନୀ ତୁ ସକଳଦୋଷନିବାରିଣୀ, ମହାପାପବିନାଶିନୀ ଓ ତ୍ରିତାପନାଶିନୀ ଅଟୁ ॥୭୪॥

ଯୋଗମାୟା ତୁ ଅଭୀଷ୍ଟପ୍ରଦାୟିନୀ ଓ ପ୍ରଣତ ଜନଙ୍କ ଦୁଃଖନାଶିନୀ ଅଟୁ । ହେ ବରଦାତ୍ରୀ, ହରପ୍ରିୟା ଦେବି ! ତୁ ମୋର ସକଳ ଦୁଃଖ ହରଣ କର ॥୭୫॥

ବିଦ୍ୟା ତବୈବ ବିତ୍ତଂ ଚ ତାବକଂ ସିଂହବାହିନି ।
ସ୍ତ୍ରୀ ଯଶଶ୍ଚ ସୁଖଂ ସର୍ବଂ ତାବକଂ ବିଶ୍ୱରୂପିଣି ॥୭୬॥

ଶରଣ୍ୟେ ତ୍ର୍ୟମ୍ବକେ ଦେବି ମାତଃ ସର୍ବାର୍ଥସାଧିକେ ।
ସର୍ବଭାବେନ ନୌମି ତ୍ୱାଂ ସର୍ବଯୋଗସମନ୍ୱିତେ ॥୭୭॥

ତ୍ୱାଂ କ୍ଲେଶହାରିଣୀଂ ସୌମ୍ୟେ ସଚ୍ଚିଦାନନ୍ଦବିଗ୍ରହେ ।
କାୟେନ ମନସା ବାଚା ପ୍ରଣମାମି ମୁହୁର୍ମୁହୁଃ ॥୭୮॥

ତାପଂ ହର ଚିଦାନନ୍ଦେ ପାପଂ ଚ ହର ପୁଣ୍ୟଦେ ।
ତ୍ୱମେବ ଶୋକସଂସାରେ ଗତିର୍ମମ ଶୁଭଙ୍କରି ॥୭୯॥

ସୁଖଦେ ସ୍ୱସ୍ତିଦେ ଭବ୍ୟେ ତ୍ୱତ୍ପଦଂ ଶରଣଂ ମମ ।
ତ୍ରାୟସ୍ୱ ପୀଡ଼ିତଂ ତପ୍ତଂ ଦେହି ଶାନ୍ତିଂ ଚିରନ୍ତନୀମ୍ ॥୮୦॥

---

ହେ ସିଂହବାହିନି ! ତୋର ହିଁ ଏ ସମସ୍ତ ବିଦ୍ୟା, ତୋର ହିଁ ଏ ସମସ୍ତ ଧନ । ହେ ବିଶ୍ୱରୂପିଣି ! ପତ୍ନୀ, ଯଶ, ସକଳ ସୁଖ – ସବୁକିଛି ତୋର ହିଁ ଅଟେ ॥୭୬॥

ଶରଣଦାୟିନୀ, ତ୍ରିନୟନା, ସର୍ବାଭୀଷ୍ଟପ୍ରଦାୟିନୀ, ସକଳଯୋଗସ୍ୱରୂପିଣୀ ହେ ମା ଭଗବତି ! ମୁଁ ସର୍ବଥା ତୋର ସ୍ତୁତି କରୁଛି ॥୭୭॥

ହେ ସୌମ୍ୟା ! ହେ ସଚ୍ଚିଦାନ୍ଦସ୍ୱରୂପିଣି ! ଦୁଃଖନାଶିନୀ ତୋତେ କାୟମନୋବାକ୍ୟରେ ବାରମ୍ବାର ନମସ୍କାର କରୁଛି ॥୭୮॥

ହେ ଚିଦାନନ୍ଦମୟି ! ମୋର ସନ୍ତାପ ହରଣ କର । ହେ ପୁଣ୍ୟଦାୟିନି ! ମୋର ପାପ ହରଣ କର । ହେ ଶୁଭଙ୍କରି ! ଏ ଦୁଃଖପୂର୍ଣ୍ଣ ସଂସାରରେ ତୁ ହିଁ ମୋର ଗତି ଅଟୁ ॥୭୯॥

ହେ ସୁଖଦାୟିନୀ, କଲ୍ୟାଣପ୍ରଦାୟିନୀ ମା ପାର୍ବତି ! ତୋର ଚରଣ ହିଁ ମୋର ଶରଣ । ଏ ପୀଡ଼ିତ, ସନ୍ତପ୍ତ ଜନକୁ ରକ୍ଷା କର ଓ ଚିରନ୍ତନ ଶାନ୍ତି ପ୍ରଦାନ କର ॥୮୦॥

ଇନ୍ଦ୍ରିୟାଣି ଚ ସର୍ବାଣି ହରନ୍ତି ଚପଳଂ ମନଃ ।
ଶକ୍ତିଂ ଦେହି ମହାଶକ୍ତେ ଗ୍ରହୀତୁଂ ତାନି ସର୍ବଶଃ ।।୮୧।।

ମାତ୍ସର୍ଯ୍ୟଂ ଲୋଭମୋହୌ ଚ କାମକ୍ରୋଧମଦାଂସ୍ତଥା ।
ବୈରିନାଶିନି କୌବେରି ସତ୍ୱରଂ ମେ ବିନାଶୟ ।।୮୨।।

ଜଗଦୀଶେ ସୁଧୀଶେ ହେ ଜନତାରିଣି ପାବନି ।
ପ୍ରଣତଂ ପତିତଂ ପାହି ହତବୁଦ୍ଧିବଳଂ ଜନମ୍ ।।୮୩।।

ଦୀନହୀନମନାଥଂ ମାଂ ଜୀବୋଦ୍ଧାରିଣି ଶାଙ୍କରି ।
ଭବସାଗରସନ୍ତପ୍ତଂ ଭବତାରିଣି ତାରୟ ।।୮୪।।

ଅତିମୋହବଶାଦ୍ ଦେବି ବିନଶ୍ୟାମି ସୁଧାମୟି ।
ଅଜ୍ଞାନତିମିରଂ ବିଦ୍ୟେ ହେ ଜ୍ୟୋତିର୍ମୟି ନାଶୟ ।।୮୫।।

---

ହେ ମହାଶକ୍ତି ! ସମସ୍ତ ଇନ୍ଦ୍ରିୟ ମୋର ଚଞ୍ଚଳ ମନକୁ ହରଣ କରିନେଉଛନ୍ତି । ସେଗୁଡ଼ିକୁ ପୂର୍ଣ୍ଣତଃ ସଂଯତ କରିବାକୁ ଶକ୍ତି ପ୍ରଦାନ କର ।।୮୧।।

ହେ ରିପୁନାଶିନୀ କୌବେରି (କୁବେରଙ୍କ ଶକ୍ତି) ! କାମ, କ୍ରୋଧ, ଲୋଭ, ମଦ, ମୋହ ଓ ମାତ୍ସର୍ଯ୍ୟ - ମୋର ଏହି ଷଟ୍‌ଶତ୍ରୁଙ୍କୁ ଶୀଘ୍ର ବିନାଶ କର ।।୮୨।।

ହେ ପ୍ରଜ୍ଞେଶ୍ୱରୀ, ଜନତାରିଣୀ, ପବିତ୍ରକାରିଣୀ ବିଶ୍ୱେଶ୍ୱରି ! ପତିତ, ବୁଦ୍ଧିବଳହୀନ ଏହି ପତିତ ଜନକୁ ରକ୍ଷାକର ।।୮୩।।

ହେ ଜୀବୋଦ୍ଧାରିଣୀ, ଭବତାରିଣୀ, ଶଙ୍କରବଲ୍ଲଭା ଦେବି ! ଦୀନ, ହୀନ, ଅନାଥ, ଭବସାଗରସନ୍ତପ୍ତ ମୋତେ ପାର କର ।।୮୪।।

ହେ ଅମୃତମୟୀ, ଜ୍ୟୋତିର୍ମୟୀ, ବିଦ୍ୟାସ୍ୱରୂପିଣୀ ଦେବି ! ଅତି ମୋହ ହେତୁ ମୁଁ ନଷ୍ଟ ହୋଇଯାଉଛି । ମୋର ଅଜ୍ଞାନ-ଅନ୍ଧକାର ନାଶକର ।।୮୫।।

ଭଜନଂ ନ କୃତଂ ସମ୍ୟଙ୍ ମୟା ଚଞ୍ଚଳଚେତସା ।
ତଥାପି ତ୍ୱତ୍‌କୃପାଦୃଷ୍ଟିର୍ମୟି ସ୍ୟାତ୍କରୁଣାମୟି ॥୮୬॥

ଭକ୍ତିପୂଜାବ୍ରତାଦୀନି ନ ଜାନାମି ଶିବାୟିକେ ।
କୃପାସାଗରି ହେ ମାତସ୍ତ୍ୱତ୍‌କୃପା ଶରଣଂ ମମ ॥୮୭॥

ଯା ଚ୍ୟୁତିସ୍ତ୍ୱାଦୟୋସ୍ତେଽଭୂତ୍ କ୍ଷମଣୀୟା କ୍ଷମାପ୍ରଦେ ।
ପୁତ୍ରୋ ଜାୟେତ ଦୋଷୀ ତୁ କୁମାତା ନ ଭବେତ୍କ୍ୱଦା ॥୮୮॥

ଚରଣୌ ତେ ଜଗନ୍ମାତରଜ୍ଞାନେନ ନ ସେବିତୌ ।
ତଥାପି ତ୍ୱତ୍‌ପ୍ରସାଦୋଽସ୍ତି ଜୀବାନୁଗ୍ରହକାରିଣି ॥୮୯॥

କଲ୍ମଷୀ ମାଦୃଶୋ ନାସ୍ତି ପାପଘ୍ନୀ ତ୍ୱାଦୃଶୀ କୁତଃ ।
ଦୁଷ୍କୃତାଦ୍ରକ୍ଷ ହେ ଦୁର୍ଗେ ଭବବନ୍ଧନମୋଚନି ॥୯୦॥

---

ହେ କରୁଣାମୟି ! ଚଞ୍ଚଳମନା ମୁଁ ତୋର ଭଜନ ଠିକ୍‌ଭାବେ କରିପାରିନାହିଁ। ତଥାପି ତୋର କୃପାଦୃଷ୍ଟି ମୋଠାରେ ରହିଥାଉ ॥୮୬॥

ହେ ଶିବାନି ! ଭକ୍ତି, ପୂଜା, ବ୍ରତ ପ୍ରଭୃତି ମୁଁ ଜାଣେ ନାହିଁ। ହେ କୃପାମୟୀ ମା ! ତୋର କୃପା ହିଁ ମୋର ଶରଣ ॥୮୭॥

ହେ କ୍ଷମାପ୍ରଦାୟିନୀ ମା ! ତୋର ପଦତଳେ ଯାହା ତ୍ରୁଟି ହୋଇଯାଇଛି, ତାହା କ୍ଷମା କରି ଦେ। ପୁତ୍ର ଦୋଷୀ ହୋଇପାରେ, କିନ୍ତୁ ମାତା କଦାପି ଖରାପ ହୋଇ ନପାରେ ॥୮୮॥

ହେ ଜଗଜ୍ଜନନି ! ଅଜ୍ଞାନବଶତଃ ତୋର ଚରଣଯୁଗଳର ସେବା କରିପାରିନାହିଁ। ଜୀବଙ୍କ ପ୍ରତି ଦୟାମୟୀ ହେ ମା ! ତଥାପି ତୋର ମୋ ପ୍ରତି ଦୟା ରହିଛି ॥୮୯॥

ଭବବନ୍ଧନମୁକ୍ତିଦାୟିନୀ ହେ ମା ଦୁର୍ଗା ! ମୋ ପରି ପାପୀ କେହି ନାହିଁ; ତୋ ପରି ପାପନାଶିନୀ କେହି ନାହିଁ। ମୋତେ ଦୁଷ୍କର୍ମରୁ ରକ୍ଷାକର ॥୯୦॥

ଜାନୀହି ମମ ପୀଡ଼ାଂ ହେ ମାତର୍ହୃଦୟବାସିନି ।
ହରପ୍ରିୟେ ମନସ୍ତାପଂ ହର ସନ୍ତାପହାରିଣି ॥୯୧॥

କଲ୍ୟାଣି ବଳମେବ ତ୍ୱଂ ସର୍ବାଭୀଷ୍ଟପ୍ରଦାୟିନୀ ।
ରୂପଂ ଦେହି ଜୟଂ ଦେହି ଯଶୋ ଦେହି ଦ୍ୱିଷୋ ଜହି ॥୯୨॥

କାଳାତୀତେ ମହାକାଳି ଦେବି ତାଣ୍ଡବଲାସିନି ।
କଳୌ କରାବଲମ୍ବଂ ମେ ଦତ୍ତାଚ୍ଛରଣଦାୟିନି ॥୯୩॥

ପାପୌଘଦାରିକେ ପୁଣ୍ୟେ ଶିବେ ନାରକହାରିକେ ।
ବିମଳେ ସର୍ବପାପାନି ହର ଦୀନାର୍ତ୍ତତାରିକେ ॥୯୪॥

ଦେହି ସମ୍ପଦମାରୋଗ୍ୟଂ ସୁଖଂ ଦେହି ଚ ଶାଶ୍ୱତମ୍ ।
ବଦ୍ୟାଂ ମୁକ୍ତିପ୍ରଦାଂ ଦେହି ଧର୍ମକାମାର୍ଥସାଧିକେ ॥୯୫॥

---

ହୃଦୟବାସିନୀ ହେ ମା! ତୁ ମୋର ପୀଡ଼ା ଜାଣ। ହେ ସନ୍ତାପହାରିଣୀ ମା ହରପ୍ରିୟା! ମୋର ମନସ୍ତାପ ହରଣ କର॥୯୧॥

ହେ କଲ୍ୟାଣି! ସକଳ-ଅଭୀଷ୍ଟପ୍ରଦାୟିନୀ ତୁ ହିଁ ମୋର ବଳ। ମୋତେ ରୂପ ଦେ, ଜୟ ଦେ, ଯଶ ଦେ, ମୋର ଶତ୍ରୁନାଶ କରି ଦେ॥୯୨॥

ହେ କାଳାତୀତା, ତାଣ୍ଡବନୃତ୍ୟବିଳାସିନୀ, ଶରଣଦାୟିନୀ ଦେବୀ ମହାକାଳି! ଏ କଳିଯୁଗରେ ମୋତେ ତୋ କରାଶ୍ରୟ ଦେ॥୯୩॥

ପାପରାଶିବିଧ୍ୱଂସିନୀ, ପୁଣ୍ୟସ୍ୱରୂପିଣୀ, ନରକନିବାରିଣୀ ମା ଶିବାନି! ଦୀନାର୍ତ୍ତତାରିଣୀ ମା ବିମଳା! ମୋର ସକଳପାପ ହରଣ କରି ଦେ॥୯୪॥

ଧର୍ମାର୍ଥକାମପ୍ରଦାୟିନୀ ହେ ମା! ମୋତେ ସମ୍ପଦ ଓ ଆରୋଗ୍ୟ ଦେ। ଚି[illegible]ନ ସୁଖ ଦେ। ମୁକ୍ତିଦାୟକ ଜ୍ଞାନ ମଧ୍ୟ ଦେଇଦେ॥୯୫॥

ସ୍ମୃତା ହରସି ଭୀତିଂ ଚ ଦଦସେ ଶୋଭନାଂ ମତିମ୍ ।
ସର୍ବୋପକାରିକେ ଗୌରି ପ୍ରସୀଦ ନିଖିଳେଶ୍ୱରି ॥୯୬॥
ସର୍ବମଙ୍ଗଳମାଙ୍ଗଲ୍ୟେ ଦୁର୍ଗେ ମୋକ୍ଷପ୍ରଦାୟିକେ ।
ସକଳପ୍ରାଣିନାଂ ସ୍ତୁତ୍ୟେ ବାରମ୍ବାରଂ ନମୋଽସ୍ତୁ ତେ ॥୯୭॥
ପନ୍ଥାନୋ ମେ ଶିବାଃ ସନ୍ତୁ ତ୍ୱତ୍ପ୍ରସାଦେନ ଶିବାନି ।
ବିଜୟଃ ସର୍ବକାର୍ଯ୍ୟେଷୁ ସଦାଽସ୍ତୁ ଶୁଭକାମିନି ॥୯୮॥
ତ୍ୱାମେବ ସକଳାଂ ମତ୍ୱା ଜୀବନଂ ପଦୟୋସ୍ତବ ।
ସମର୍ପୟାମି ହେ ମାତର୍ଯଥା ଯୋଗ୍ୟଂ ତଥା କୁରୁ ॥୯୯॥
ଦୁର୍ଗେ ବିପତ୍ତାରିଣି ହେ ଶରଣ୍ୟେ
ତ୍ରାୟସ୍ୱ ଦୁର୍ଗାଦ୍ ବିଷମାଦ୍ ବରେଣ୍ୟ ।
ନାସ୍ତି ତ୍ୱଦନ୍ୟା ଗତିରନ୍ୟ କାଚିତ୍
ପାଦାମ୍ବୁଜଂ ତେ ଶରଣଂ ପ୍ରପଦ୍ୟେ ॥୧୦୦॥

---

ସମସ୍ତଙ୍କ ଉପକାରିଣୀ, ସର୍ବେଶ୍ୱରୀ ହେ ମା ଗୌରି ! ତୁ ସ୍ମରଣମାତ୍ରେ ଭୟ ଦୂରକରୁ ଓ ଶୁଭବୁଦ୍ଧି ପ୍ରଦାନ କରୁ। ମୋତେ ଦୟାକର ॥୯୬॥

ସମସ୍ତ କଲ୍ୟାଣ ଓ ସୌଭାଗ୍ୟଦାୟିନୀ, ମୋକ୍ଷଦାୟିନୀ, ସକଳପ୍ରାଣୀଙ୍କ ସ୍ତୁତ୍ୟା ମା ଦୁର୍ଗା ! ତୋତେ ବାରମ୍ବାର ନମସ୍କାର ॥୯୭॥

ହେ ମା ଶିବାନି ! ତୋ କୃପାରୁ ମୋର ଯାତ୍ରା ସଫଳ ହେଉ । ହେ ଶୁଭକାମିନି ! ସମସ୍ତ କାର୍ଯ୍ୟରେ ମୋର ବିଜୟ ହେଉ ॥୯୮॥

ହେ ମା ! ତୋତେ ମୋର ସର୍ବସ୍ୱ ମନେକରି ତୋ ପଦତଳେ ମୋ ଜୀବନକୁ ସମର୍ପି ଦେଉଛି । ଯାହା ଉଚିତ, ତାହା ତୁ କର ॥୯୯॥

ହେ ସଙ୍କଟତାରିଣୀ, ଶରଣଦାୟିନୀ, ସର୍ବଶ୍ରେଷ୍ଠଦେବୀ ମା ଦୁର୍ଗା ! ମୋତେ ବିଷମ ସଙ୍କଟରୁ ରକ୍ଷାକର । ହେ ମା ! ତୋ ବିନା ମୋର ଅନ୍ୟ କୌଣସି ଗତି ନାହିଁ । ତୋ ପାଦପଦ୍ମରେ ଶରଣ ନେଲି ॥୧୦୦॥

(ଫଳଶ୍ରୁତି)

ଇଦଂ ସ୍ତୁତିଶତଂ ଭକ୍ତ୍ୟା ପ୍ରତ୍ୟହଂ ଯଃ ପଠେତ୍ ସୁଧୀଃ ।
ତସ୍ୟ ପାପାନି ନଶ୍ୟନ୍ତି ସ ଶାନ୍ତିମଧିଗଚ୍ଛତି ॥୧୦୧॥

ପ୍ରାପ୍ନୋତି ବିପୁଳଂ ବିତ୍ତଂ ଯଶଶ୍ଚ କ୍ଷିତିମଣ୍ଡଳେ ।
ଅଭୀଷ୍ଟପୁତ୍ରପୌତ୍ରାଦୀନ୍ ମହାଶକ୍ତିପ୍ରସାଦତଃ ॥୧୦୨॥

ନିରନ୍ତରଂ ସ୍ମରନ୍ଦୁର୍ଗାଂ ତନ୍ନାମଗୁଣକୀର୍ତ୍ତନୈଃ ।
ଅନ୍ତକାଳେ ତ୍ୟଜନ୍ଦେହଂ ଲଭତେ ପରମଂ ପଦମ୍ ॥୧୦୩॥

॥ ଇତି ଶ୍ରୀଭରତଚନ୍ଦ୍ରନାଥକୃତଂ 'ଶ୍ରୀଦୁର୍ଗାଶତକମ୍' ସମ୍ପୂର୍ଣ୍ଣମ୍ ॥

---

(ଫଳଶ୍ରୁତି)

ଯେଉଁ ସୁଧୀଜନ ପ୍ରତିଦିନ ସ୍ତୁତିପରକ ଏହି 'ଦୁର୍ଗାଶତକ' ପାଠ କରିବେ, ତାଙ୍କର ସମସ୍ତ ପାପକ୍ଷୟ ହେବ ଓ ସେ ଶାନ୍ତିଲାଭ କରିବେ ॥୧୦୧॥

ମହାଶକ୍ତି ଦୁର୍ଗାଙ୍କର କୃପାରୁ ସେ ଏ ମହୀମଣ୍ଡଳରେ ବିପୁଳ ଅର୍ଥ, ଯଶ, ଅଭୀଷ୍ଟ ପୁତ୍ରପୌତ୍ରାଦି ଲାଭ କରିବେ ॥୧୦୨॥

ଶ୍ରୀଦୁର୍ଗାଙ୍କର ନାମ ଓ ଗୁଣ କୀର୍ତ୍ତନ ଦ୍ୱାରା ନିରନ୍ତର ତାଙ୍କୁ ସ୍ମରଣ କରି, ମୃତ୍ୟୁ ସମୟରେ ଦେହତ୍ୟାଗ କଲେ ସେ ପରମପଦ (ମୋକ୍ଷ) ଲାଭ କରିବେ ॥୧୦୩॥

॥ ଇତି ଶ୍ରୀ ଭରତ ଚନ୍ଦ୍ର ନାଥ କୃତ 'ଶ୍ରୀଦୁର୍ଗାଶତକମ୍'ର ସ୍ୱୟଂକୃତ ଓଡ଼ିଆ ଗଦ୍ୟାନୁବାଦ ସଂପୂର୍ଣ୍ଣ ॥

## ଭବାନ୍ୟଷ୍ଟକମ୍

ନ ତାତୋ ନ ମାତା ନ ବନ୍ଧୁର୍ନଦାତା
　　ନ ପୁତ୍ରୋ ନ ପୁତ୍ରୀ ନ ଭୃତ୍ୟୋ ନ ଭର୍ତ୍ତା ।
ନ ଜାୟା ନ ବିଦ୍ୟା ନ ବୃତ୍ତିର୍ମମୈବ
　　ଗତିସ୍ତ୍ୱଂ ଗତିସ୍ତ୍ୱଂ ତ୍ୱମେକା ଭବାନି ॥୧॥
ଭବାବ୍ଧାବପାରେ ମହାଦୁଃଖଭୀରୁଃ
　　ପପାତ ପ୍ରକାମୀ ପ୍ରଲୋଭୀ ପ୍ରମତ୍ତଃ ।
କୁସଂସାରପାଶପ୍ରବଦ୍ଧଃ ସଦାହଂ । ଗତିସ୍ତ୍ୱଂ... ॥୨॥
ନ ଜାନାମି ଦାନଂ ନ ଚ ଧ୍ୟାନଯୋଗଂ
　　ନ ଜାନାମି ତନ୍ତ୍ରଂ ନ ଚ ସ୍ତୋତ୍ରମନ୍ତ୍ରମ୍ ।
ନ ଜାନାମି ପୂଜାଂ ନ ଚ ନ୍ୟାସଯୋଗଂ । ଗତିସ୍ତ୍ୱଂ... ॥୩॥
ନ ଜାନାମି ପୁଣ୍ୟଂ ନ ଜାନାମି ତୀର୍ଥଂ
　　ନ ଜାନାମି ମୁକ୍ତିଂ ଲୟଂ ବା କଦାଚିତ୍ ।
ନ ଜାନାମି ଭକ୍ତିଂ ବ୍ରତଂ ବାପି ମାତର୍ । ଗତିସ୍ତ୍ୱଂ... ॥୪॥
କୁକର୍ମୀ କୁସଙ୍ଗୀ କୁବୁଦ୍ଧିଃ କୁଦାସଃ
　　କୁଳାଚାରହୀନଃ କଦାଚାରଲୀନଃ ।
କୁଦୃଷ୍ଟିଃ କୁବାକ୍ୟପ୍ରବନ୍ଧଃ ସଦାହଂ । ଗତିସ୍ତ୍ୱଂ... ॥୫॥
ପ୍ରଜେଶଂ ରମେଶଂ ମହେଶଂ ସୁରେଶଂ
　　ଦିନେଶଂ ନିଶୀଥେଶ୍ୱରଂ ବା କଦାଚିତ୍ ।
ନ ଜାନାମି ଚାନ୍ୟତ୍ ସଦାହଂ ଶରଣ୍ୟେ । ଗତିସ୍ତ୍ୱଂ... ॥୬॥
ବିବାଦେ ବିଷାଦେ ପ୍ରମାଦେ ପ୍ରବାସେ
　　ଜଳେ ଚାନଳେ ପର୍ବତେ ଶତ୍ରୁମଧ୍ୟେ ।
ଅରଣ୍ୟେ ଶରଣ୍ୟେ ସଦା ମାଂ ପ୍ରପାହି । ଗତିସ୍ତ୍ୱଂ... ॥୭॥
ଅନାଥୋ ଦରିଦ୍ରୋ ଜରାରୋଗଯୁକ୍ତୋ
　　ମହାକ୍ଷୀଣଦୀନଃ ସଦା ଜାଡ୍ୟବକ୍ତ୍ରଃ ।
ବିପତ୍ତୌ ପ୍ରବିଷ୍ଟଃ ପ୍ରଣଷ୍ଟଃ ସଦାହଂ । ଗତିସ୍ତ୍ୱଂ... ॥୮॥

॥ ଇତି ଶ୍ରୀମଚ୍ଛଙ୍କରାଚାର୍ଯ୍ୟକୃତଂ ଭବାନ୍ୟଷ୍ଟକଂ ସମ୍ପୂର୍ଣ୍ଣମ୍ ॥

## ଅନୁବାଦ

ହେ ଭବାନି ! ପିତା, ମାତା, ବନ୍ଧୁ, ଦାତା, ପୁତ୍ର, କନ୍ୟା, ଭୃତ୍ୟ, ସ୍ୱାମୀ, ପତ୍ନୀ, ବିଦ୍ୟା ଓ ବୃତ୍ତି - ଏମାନଙ୍କ ମଧ୍ୟରୁ କେହି ବି ମୋର ନୁହନ୍ତି । ହେ ଦେବି ! ଏକମାତ୍ର ତୁ ହିଁ ମୋର ଗତି, ତୁ ହିଁ ମୋର ଗତି ଅଟୁ ।।୧।।

ମୁଁ ଅପାର ଭବସାଗରରେ ପଡ଼ିଯାଇଛି, ମହାଦୁଃଖହେତୁ ଭୟଭୀତ ଅଟେ; ଅତ୍ୟନ୍ତ କାମୀ, ଲୋଭୀ ଓ ଉନ୍ମତ୍ତ ତଥା କୁତ୍ସିତ ସଂସାରର ବନ୍ଧନରେ ଆବଦ୍ଧ ହୋଇଯାଇଛି । ହେ ଭବାନି ! ବର୍ତ୍ତମାନ ଏକମାତ୍ର ତୁ ହିଁ ମୋର ଗତି ଅଟୁ ।।୨।।

ହେ ଦେବି ! ମୁଁ ଦାନ ଦେବା ଜାଣିନି କିମ୍ବା ଧ୍ୟାନଯୋଗ ମୋତେ ଜଣାନାହିଁ, ତନ୍ତ୍ର ଓ ସ୍ତୋତ୍ରମନ୍ତ୍ରର ଜ୍ଞାନ ମଧ୍ୟ ମୋର ନାହିଁ, ପୂଜା ତଥା ନ୍ୟାସ ପ୍ରଭୃତି କ୍ରିୟା ବିଷୟରେ ମୁଁ ଅଜ୍ଞ । ବର୍ତ୍ତମାନ ତୁ ହିଁ ଏକମାତ୍ର ମୋର ଗତି ଅଟୁ ।।୩।।

ପୁଣ୍ୟ ଜାଣିନି କି ତୀର୍ଥ ଜାଣିନି, ମୋକ୍ଷପଥ ବା ଲୟ (ମନର ଲୀନତା ବା ଏକାଗ୍ରତା) ମୋତେ କେବେ ଜଣାନାହିଁ । ହେ ମାତା ! ଭକ୍ତି ବା ବ୍ରତ ବି ମୋତେ ଜଣାନାହିଁ । ହେ ଭବାନି ! ଏବେ କେବଳ ତୁ ହିଁ ମୋର ସହାୟ ଅଟୁ ।।୪।।

ମୁଁ କୁକର୍ମୀ, କୁସଙ୍ଗୀ, ଦୁର୍ବୁଦ୍ଧି, ଅଯୋଗ୍ୟ ସେବକ, କୁଳୋଚିତ ସଦାଚାରରୁ ରହିତ, ଦୁରାଚାରପରାୟଣ, କୁତ୍ସିତଦୃଷ୍ଟିଯୁକ୍ତ ତଥା ସର୍ବଦା ଦୁର୍ବଚନପ୍ରକାଶରେ ଅଭ୍ୟସ୍ତ ଅଟେ । ହେ ଭବାନି ! ମୋପରି ଅଧମର ତୁ ହିଁ ଏକମାତ୍ର ଆଶ୍ରୟ ଅଟୁ ।।୫।।

ମୁଁ ବ୍ରହ୍ମା, ବିଷ୍ଣୁ, ଶିବ, ଇନ୍ଦ୍ର, ସୂର୍ଯ୍ୟ, ଚନ୍ଦ୍ର ତଥା ଅନ୍ୟ କୌଣସି ଦେବତାଙ୍କୁ ମଧ୍ୟ ଜାଣିନାହିଁ । ହେ ଶରଣଦାୟିନୀ ଭବାନି ! ଏକମାତ୍ର ତୁ ହିଁ ମୋର ଗତି ଅଟୁ ।।୬।।

ହେ ଆଶ୍ରୟଦାତ୍ରି ! ତୁ ବିବାଦ, ବିଷାଦ, ପ୍ରମାଦ, ବିଦେଶ, ଜଳ, ଅଗ୍ନି, ପର୍ବତ, ବନ ତଥା ଶତ୍ରୁମାନଙ୍କ ମଧ୍ୟରେ ସର୍ବଦା ମୋର ରକ୍ଷା କର । ହେ ଭବାନି ! ଏକମାତ୍ର ତୁ ହିଁ ମୋର ଶରଣ ଅଟୁ ।।୭।।

ହେ ଭବାନି ! ମୁଁ ସର୍ବଦା ଅନାଥ, ଦରିଦ୍ର, ଜରାଜୀର୍ଣ୍ଣ, ରୋଗୀ, ଅତ୍ୟନ୍ତ ଦୁର୍ବଳ, ଦୀନ, ମୂକ, ବିପଦ୍‌ଗ୍ରସ୍ତ ଓ ବିନଷ୍ଟ ଅଟେ । ବର୍ତ୍ତମାନ ତୁ ହିଁ ଏକମାତ୍ର ମୋର ଗତି ଅଟୁ ।।୮।।

***

# ଦେବ୍ୟପରାଧକ୍ଷମାପନସ୍ତୋତ୍ରମ୍

ନ ମନ୍ତ୍ରଂ ନୋ ଯନ୍ତ୍ରଂ ତଦପି ଚ ନ ଜାନେ ସ୍ତୁତିମହୋ
ନ ଚାହ୍ୱାନଂ ଧ୍ୟାନଂ ତଦପି ଚ ନ ଜାନେ ସ୍ତୁତିକଥାଃ ।
ନ ଜାନେ ମୁଦ୍ରାସ୍ତେ ତଦପି ଚ ନ ଜାନେ ବିଳପନଂ
ପରଂ ଜାନେ ମାତସ୍ତ୍ୱଦନୁସରଣଂ କ୍ଳେଶହରଣମ୍ ।।୧।।
ବିଧେରଜ୍ଞାନେନ ଦ୍ରବିଣବିରହେଣାଳସତୟା
ବିଧେୟାଶକ୍ୟତ୍ୱାତ୍ତବ ଚରଣୟୋର୍ଯା ଚ୍ୟୁତିରଭୂତ୍ ।
ତଦେତତ୍ କ୍ଷନ୍ତବ୍ୟଂ ଜନନି ସକଳୋଦ୍ଧାରିଣି ଶିବେ
କୁପୁତ୍ରୋ ଜାୟେତ କ୍ୱଚିଦପି କୁମାତା ନ ଭବତି ।।୨।।
ପୃଥିବ୍ୟାଂ ପୁତ୍ରାସ୍ତେ ଜନନି ବହବଃ ସନ୍ତି ସରଳାଃ
ପରଂ ତେଷାଂ ମଧ୍ୟେ ବିରଳତରଳୋଽହଂ ତବ ସୁତଃ ।
ମଦୀୟୋଽୟଂ ତ୍ୟାଗଃ ସମୁଚିତମିଦଂ ନୋ ତବ ଶିବେ
କୁପୁତ୍ରୋ ଜାୟେତ କ୍ୱଚିଦପି କୁମାତା ନ ଭବତି ।।୩।।

---

## ଅନୁବାଦ

ହେ ମାତା ! ମୁଁ ତୋର ମନ୍ତ୍ର, ଯନ୍ତ୍ର, ସ୍ତୁତି, ଆବାହନ, ଧ୍ୟାନ, ସ୍ତୁତିକଥା, ମୁଦ୍ରା ତଥା ବିଳାପ ପ୍ରଭୃତି କିଛି ହେଲେ ଜାଣିନାହିଁ; କିନ୍ତୁ ଏତିକି ଜାଣେ ଯେ ତୋତେ ଅନୁସରଣ କଲେ ସମସ୍ତ ଦୁଃଖକଷ୍ଟ ଦୂର ହୁଏ ।।୧।।

ସମସ୍ତଙ୍କର ଉଦ୍ଧାରକର୍ତ୍ତ୍ରୀ ହେ ମା ଶିବାନି ! ପୂଜାବିଧି ନ ଜାଣିବା, ଧନର ଅଭାବ, ଆଳସ୍ୟ, ପୂଜାବିଧିପାଳନରେ ଅସାମର୍ଥ୍ୟ ପ୍ରଭୃତି କାରଣରୁ ତୋ ପଦଯୁଗଳର ସେବା କରିବାରେ ଯେଉଁ ତ୍ରୁଟି ହୋଇଥିବ, ତାହା ତୁ କ୍ଷମା କରିଦେ; କାରଣ ପୁତ୍ର କୁପୁତ୍ର ହୋଇପାରେ, କିନ୍ତୁ ମାତା କଦାପି କୁମାତା ହୁଏ ନାହିଁ ।।୨।।

ହେ ମା ! ଏ ପୃଥିବୀରେ ତୋର ବହୁତ ସରଳ ପୁତ୍ର ଅଛନ୍ତି, କିନ୍ତୁ ମୁଁ ସେମାନଙ୍କ ମଧ୍ୟରେ ବିରଳ ଓ ଅତି ଚଞ୍ଚଳ । ହେ ଶିବାନି ! ମୋତେ ତ୍ୟାଗ କରିଦେବା ତୋ ପକ୍ଷେ ଉଚିତ ନୁହେଁ; ଯେହେତୁ ପୁତ୍ର କୁପୁତ୍ର ହୋଇପାରେ, କିନ୍ତୁ ମାତା କଦାପି କୁମାତା ହୁଏ ନାହିଁ ।।୩।।

ଜଗନ୍ମାତର୍ମାତସ୍ତବ ଚରଣସେବା ନ ରଚିତା
ନ ବା ଦତ୍ତଂ ଦେବି ଦ୍ରବିଣମପି ଭୂୟସ୍ତବ ମୟା ।
ତଥାପି ତ୍ୱଂ ସ୍ନେହଂ ମୟି ନିରୁପମଂ ଯତ୍ ପ୍ରକୁରୁଷେ
କୁପୁତ୍ରୋ ଜାୟେତ କ୍ୱଚିଦପି କୁମାତା ନ ଭବତି ।।୪।।
ପରିତ୍ୟକ୍ତା ଦେବା ବିବିଧବିଧିସେବାକୁଳତୟା
ମୟା ପଞ୍ଚାଶୀତେରଧିକମପନୀତେ ତୁ ବୟସି ।
ଇଦାନୀଂ ଚେନ୍ମାତସ୍ତବ ଯଦି କୃପା ନାପି ଭବିତା
ନିରାଲମ୍ବୋ ଲମ୍ବୋଦରଜନନି କଂ ଯାମି ଶରଣମ୍ ।।୫।।
ଶ୍ୱପାକୋ ଜଳ୍ପାକୋ ଭବତି ମଧୁପାକୋପମଗିରା
ନିରାତଙ୍କୋ ରଙ୍କୋ ବିହରତି ଚିରଂ କୋଟିକନକୈଃ ।
ତବାପର୍ଣ୍ଣେ କର୍ଣ୍ଣେ ବିଶତି ମନୁବର୍ଣ୍ଣେ ଫଳମିଦଂ
ଜନଃ କୋ ଜାନୀତେ ଜନନୀ ଜପନୀୟଂ ଜପବିଧୌ ।।୬।।

---

ହେ ଜଗଜ୍ଜନନି ! ହେ ମା ! ମୁଁ ତୋ ଚରଣସେବା କରିପାରିଲି ନାହିଁ କିମ୍ବା ତୋତେ ପ୍ରଚୁର ଧନ ମଧ୍ୟ ଦେଇପାରିଲି ନାହିଁ। ତଥାପି ତୁ ମୋ ପ୍ରତି ଅତୁଳନୀୟ ସ୍ନେହ ରଖିଛୁ। ଏଥିରୁ ଜଣାଗଲା ଯେ ପୁତ୍ର କୁପୁତ୍ର ହୋଇପାରେ, କିନ୍ତୁ ମାତା କେବେହେଲେ କୁମାତା ହୋଇ ନପାରେ ।।୪।।

ହେ ଗଣେଶଜନନି ! ହେ ମା ! ମୋର ବୟସ ପଞ୍ଚାଅଶୀରୁ ଅଧିକ ହେବାରୁ ବିବିଧ ନିୟମରେ ପୂଜା କରିବାରେ ମୁଁ ବିଚଳିତ ହୋଇ ସମସ୍ତ ଦେବତାଙ୍କୁ ପରିତ୍ୟାଗ କରିଦେଇଛି। ଯଦି ବର୍ତ୍ତମାନ ତୋର କୃପା ନ ହେବ, ତେବେ ମୁଁ ନିରାଶ୍ରୟ ହୋଇ କାହାର ଶରଣ ନେବି ? ।।୫।।

ହେ ମା ଅପର୍ଣ୍ଣା ! ଯଦି ତୋର ମନ୍ତ୍ରାକ୍ଷର କାନରେ ପଡ଼ିବାମାତ୍ରେ ଚଣ୍ଡାଳ ମଧ୍ୟ ମିଷ୍ଟାନ୍ନତୁଲ୍ୟ ସୁମଧୁର ବଚନ କହି ବାଗ୍ମୀ ପାଲଟିଯାଏ ଏବଂ ଅତି ଦରିଦ୍ର ମଧ୍ୟ କୋଟିପତି ହୋଇ ଚିରକାଳପର୍ଯ୍ୟନ୍ତ ନିର୍ଭୟରେ ବିଚରଣ କରିଥାଏ, ତେବେ ବିଧି ଅନୁସାରେ ସେହି ମନ୍ତ୍ରର ଜପ କଲେ ଯେଉଁ ଫଳ ମିଳେ, ତାହା କିଏ ଜାଣେ କି ? ।।୬।।

ଚିତାଭସ୍ମାଲେପୋ ଗରଳମଶନଂ ଦିକ୍‌ପଟଧରୋ
ଜଟାଧାରୀ କଣ୍ଠେ ଭୁଜଗପତିହାରୀ ପଶୁପତିଃ ।
କପାଳୀ ଭୂତେଶୋ ଭଜତି ଜଗଦୀଶୈକପଦବୀଂ
ଭବାନି ତ୍ୱତ୍‌ପାଣିଗ୍ରହଣପରିପାଟୀଫଳମିଦମ୍ ।।୭।।
ନ ମୋକ୍ଷସ୍ୟାକାଙ୍‌କ୍ଷା ଭବବିଭବବାଞ୍ଛାପି ଚ ନ ମେ
ନ ବିଜ୍ଞାନାପେକ୍ଷା ଶଶିମୁଖି ସୁଖେଚ୍ଛାପି ନ ପୁନଃ ।
ଅତସ୍ତ୍ୱାଂ ସଂଯାଚେ ଜନନୀ ଜନନଂ ଯାତୁ ମମ ବୈ
ମୃଡ଼ାନୀ ରୁଦ୍ରାଣୀ ଶିବ ଶିବ ଭବାନୀତି ଜପତଃ ।।୮।।

ନାରାଧିତାସି ବିଧିନା ବିବିଧୋପଚାରୈଃ
କିଂ ରୁକ୍ଷଚିନ୍ତନପରୈର୍ନ କୃତଂ ବଚୋଭିଃ ।
ଶ୍ୟାମେ ତ୍ୱମେବ ଯଦି କିଞ୍ଚନ ମୟ୍ୟନାଥେ
ଧତ୍ସେ କୃପାମୁଚିତମମ୍ବ ପରଂ ତବୈବ ।।୯।।

---

ଯିଏ ଶରୀରରେ ଚିତାଭସ୍ମ ବୋଳନ୍ତି, ବିଷ ଖାଆନ୍ତି, ଉଲଗ୍ନ ରହନ୍ତି, ମସ୍ତକରେ ଜଟା ଧାରଣ କରନ୍ତି, ଗଳାରେ ସର୍ପମାଳ ପିନ୍ଧନ୍ତି, ହସ୍ତରେ କପାଳ ଧାରଣ କରନ୍ତି, ପଶୁପତି ତଥା ଭୂତଗଣଙ୍କ ସ୍ୱାମୀ ଅଟନ୍ତି, ସେହି ଶିବ ଏକମାତ୍ର ଜଗଦୀଶ୍ୱର ପଦବୀ ପ୍ରାପ୍ତ ହୋଇଛନ୍ତି । ହେ ମା ଭବାନି ! ତୋତେ ବିବାହକରି ଶିବ ଏହି ଫଳଲାଭ କରିଛନ୍ତି ।।୭।।

ହେ ଚନ୍ଦ୍ରମୁଖୀ ମାତା ! ମୋର ମୋକ୍ଷକାମନା ନାହିଁ, ସାଂସାରିକ ବୈଭବରେ ଲାଳସା ମଧ ନାହିଁ, ବିଜ୍ଞାନ ତଥା ସୁଖରେ ଅଭିଳାଷ ମଧ ନାହିଁ । ଏଣୁ ମୁଁ ଏତିକି ତୋତେ ମାଗୁଛି ଯେ ମୋର ସାରା ଜୀବନ ମୃଡ଼ାନୀ, ରୁଦ୍ରାଣୀ, ଶିବ-ଶିବ, ଭବାନୀ ପ୍ରଭୃତି ନାମ ଜପିଜପି ବିତିଯାଉ ।।୮।।

ହେ ମା ଶ୍ୟାମା ! ବିବିଧ ଉପଚାରଦ୍ୱାରା ମୁଁ ତୋର ସେବା କରିନାହିଁ; (କେବଳ ଏତିକି ନୁହେଁ) ଅନିଷ୍ଟଚିନ୍ତନରେ ତତ୍ପର ନିଜ ବଚନରେ ମୁଁ କ'ଣ ବା କରିନାହିଁ ? (ଅର୍ଥାତ୍ ଅନେକ ଅପରାଧ କରିଛି) ତଥାପି ଯଦି ତୁ ମୋ ଅନାଥ ପ୍ରତି କିଛି ଦୟା ରଖୁଛୁ, ତେବେ ଏହା ତୋ ପକ୍ଷେ ଅତି ଉଚିତ ଅଟେ, ଯେହେତୁ ମା ପୁତ୍ର ପ୍ରତି କେବେ ନିର୍ଦ୍ଦୟା ହୁଏନାହିଁ ।।୯।।

आपत्सु मग्नः स्मरणं त्वदीयं
करोमि दुर्गे करुणार्णवेशि ।
नैतच्छठत्वं मम भावयेथाः
क्षुधातृषार्त्ता जननीं स्मरन्ति ॥१०॥
जगदम्ब विचित्रमत्र किं
परिपूर्णा करुणास्ति चेन्मयि ।
अपराधपरम्परावृतं
न हि माता समुपेक्षते सुतम् ॥११॥
मत्समः पातकी नास्ति पापघ्नी त्वत्समा नहि ।
एवं ज्ञात्वा महादेवि यथा योग्यं तथा कुरु ॥१२॥

॥ इति श्रीमच्छङ्कराचार्य्यकृतं देव्यपराधक्षमापनस्तोत्रं सम्पूर्णम् ॥

---

ହେ ମା ଦୁର୍ଗା ! ହେ କୃପାସାଗରୀ ମହେଶ୍ୱରି ! ମୁଁ ବିପଦରେ ପଡ଼ି ତୋତେ ସ୍ମରଣ କରୁଛି। ଏହାକୁ ତୁ ମୋର ଧୂର୍ତ୍ତତା ବୋଲି ଭାବିବୁ ନାହିଁ, କାରଣ କ୍ଷୁଧା ଓ ତୃଷାରେ ଆତୁର ହୋଇ ପୁତ୍ରମାନେ ମାତାକୁ ଡାକନ୍ତି ॥୧୦॥

ହେ ଜଗଜ୍ଜନନି ! ମୋ'ଠାରେ ଯଦି ତୋର ସମ୍ପୂର୍ଣ୍ଣ ଦୟା ରହିଛି, ତେବେ ଏହା କିଛି ବିଚିତ୍ର ନୁହେଁ। କାରଣ, ପୁତ୍ର ବହୁ ଅପରାଧ କଲେ ମଧ୍ୟ ମାତା କେବେ ତାକୁ ଅବହେଳା କରେ ନାହିଁ ॥୧୧॥

ହେ ମହାଦେବି ! ମୋପରି କେହି ପାପୀ ନାହିଁ କି ତୋପରି କେହି ପାପନାଶିନୀ ନାହିଁ। ଏହା ଜାଣି ଯାହା ଉଚିତ ମନେକରୁଛୁ, ତାହା କର ॥୧୨॥

# ଶ୍ରୀଦୁର୍ଗାଶତକ

ପ୍ରଣବସ୍ୱରୂପା ମହାଦେବୀ ମାତା ସଚ୍ଚିଦାନନ୍ଦସ୍ୱରୂପିଣୀ
ଶ୍ରୀରୂପିଣୀ ମହାଶକ୍ତିଙ୍କୁ ବନ୍ଦଇ ଭବସାଗରତାରିଣୀ ।୧।
ଦୁର୍ଦ୍ଦଶାନାଶିନୀ ଦୁର୍ଗାଙ୍କୁ ବନ୍ଦଇ ସୁଖଶାନ୍ତିପ୍ରଦାୟିନୀ
ଗାୟତ୍ରୀରୂପିଣୀ ଦୁରିତହାରିଣୀ ବନ୍ଦଇ ଦେବୀ ଶିବାନୀ ।୨।
ଜଗତଜନନୀ ଶକ୍ତିସ୍ୱରୂପିଣୀ ଦୁଃଖଦାରିଦ୍ର୍ୟହାରିଣୀ
ହୃଦୟକନ୍ଦରେ ନିତ୍ୟ ବିହାରିଣୀ ବନ୍ଦଇ ମାତା ଭବାନୀ ।୩।
ମହାବିଦ୍ୟା ମହାମାୟା ଯେ ସକଳ-ଅଜ୍ଞାନତମୋନାଶିନୀ
ଦେବୀ ହୈମବତୀପଦେ କରେ ସ୍ତୁତି ଦିବ୍ୟଜ୍ଞାନପ୍ରକାଶିନୀ ।୪।
ଭକ୍ତିସ୍ତୁତିପ୍ରିୟା ଭକତଜନଙ୍କ ସଦା ଭାଗ୍ୟବିଧାୟିନୀ
ଶାମ୍ଭବୀ ପାର୍ବତୀଦେବୀଙ୍କୁ ବନ୍ଦଇ କଲ୍ୟାଣୀ ଭକ୍ତିଦାୟିନୀ ।୫।
ଅନ୍ନପୂର୍ଣ୍ଣା ସଦାପୂର୍ଣ୍ଣା ମା ଅମ୍ବିକା ପ୍ରାଣୀଙ୍କ ଭୁକ୍ତିଦାୟିନୀ
ବନ୍ଦେ ମାହେଶ୍ୱରୀ ବିଶ୍ୱବନ୍ଦନୀୟା ଭକ୍ତଙ୍କ ମୁକ୍ତିଦାୟିନୀ ।୬।
ଜଗତ୍କାରିଣୀ ମା ଜଗଦ୍ଧାରିଣୀ ମା ~~କାଳେ~~ ଜଗସଂହାରକାରିଣୀ
ବିମଳ-ଉତ୍କର୍ଷବିଧାୟିନୀ ବ୍ରାହ୍ମୀ ବନ୍ଦଇ ସିଦ୍ଧିରୂପିଣୀ ।୭।
ଜନନୀ ଦେବଙ୍କ ଦୁଃଖାପହାରିଣୀ ସର୍ବଦାନବଘାତିନୀ
ମୁମୁକ୍ଷୁ ଜନଙ୍କ ପୂଜିତା କଲ୍ୟାଣୀ ବନ୍ଦଇ ବୁଦ୍ଧିଦାୟିନୀ ।୮।
ଶରଣ୍ୟା ଶରଣାଗତଜୀବଙ୍କର ସକଳକ୍ଳେଶହାରିଣୀ
ସୁଖବିଧାୟିନୀ ସମ୍ପଦଦାୟିନୀ ବନ୍ଦଇ ବିଶ୍ୱଧାରିଣୀ ।୯।
ବିକ୍ରମଶାଳିନୀ ଜ୍ଞାନସ୍ୱରୂପିଣୀ ବୈଷ୍ଣବୀ ବ୍ରହ୍ମବାଦିନୀ
ଅନନ୍ତ-ବିମଳପ୍ରେମରୂପିଣୀ ମା ବନ୍ଦେ କୈବଲ୍ୟଦାୟିନୀ ।୧୦।
କାଳରାତ୍ରି ମହାରାତ୍ରି ମୋହରାତ୍ରି ମନସ୍ୱିନୀ ତପସ୍ୱିନୀ
ସର୍ବଶାସ୍ତ୍ରମୟୀ ଦେବୀଙ୍କୁ ବନ୍ଦଇ ମହାଶକ୍ତି ଯଶସ୍ୱିନୀ ।୧୧।
ମଧୁକଇଟଭ-ସଂହାରକାରିଣୀ କମଳାସନତାରିଣୀ
ଭୀମବଦନା ମା ମହାମାୟା ଶକ୍ତି ବନ୍ଦଇ ଶୂଳଧାରିଣୀ ।୧୨।

କରାଳନୟନା ଜୟା ମା ଈଶାନୀ ରକ୍ତବୀଜବିନାଶିନୀ
ଭୟଙ୍କରୀ ମହାକାଳୀଙ୍କୁ ବନ୍ଦଇ କାଳେ ଶକ୍ତିପ୍ରକାଶିନୀ ।୧୩।
ଶକ୍ତିହସ୍ତା ମାତା ମହାରୂପା ସେ ତ ଚଣ୍ଡମୁଣ୍ଡବିନାଶିନୀ
ଶତ୍ରୁସଂହାରିଣୀ ବନ୍ଦଇ ଜନନୀ ଧୂମ୍ରଲୋଚନନାଶିନୀ ।୧୪।
ଦେବତାମାନଙ୍କ ଶରଣଦାୟିନୀ ମହିଷାସୁରମର୍ଦ୍ଦିନୀ
ମାତା କାଳିକାଙ୍କୁ ସର୍ବଦା ବନ୍ଦଇ ସକଳକ୍ଷେମବର୍ଦ୍ଧିନୀ ।୧୫।
ଇନ୍ଦ୍ରିୟଗଣଙ୍କ ଅଧିଷ୍ଠାତ୍ରୀ ଦେବୀ ସକଳ-ଅଙ୍ଗରକ୍ଷିଣୀ
ବନ୍ଦେ ବାରମ୍ବାର ଜନନୀଶ୍ରୀପଦେ ଭୁବନତ୍ରୟପାଳିନୀ ।୧୬।
ସର୍ବଜ୍ଞ ଶ୍ରୀହରି ଅମ୍ବାଳିକାଗୁଣଗାନେ ଅଟନ୍ତି ଅକ୍ଷମ
ସଦା ମହାଦେବୀ ହୃଦୟଭକ୍ତିରେ ହୋଇଥାଆନ୍ତି ପ୍ରସନ୍ନ ।୧୭।
ଅନାଦି ହେତୁରୁ ମହାଦେବୀଙ୍କର ନାହିଁ କଦାପି ଜନମ
ଜଗନ୍ମାତା ନିତ୍ୟା ପରମା ସକଳ କାରଣର ସେ କାରଣ ।୧୮।
ଜୀବଙ୍କ ମଧ୍ୟରେ ମା ସର୍ବମଙ୍ଗଳା ଶକ୍ତିରୂପେ ବିଦ୍ୟମାନ
ତାଙ୍କ କୃପା ବିନା ପ୍ରାଣୀଏ ହୁଅନ୍ତି ଶବପ୍ରାୟ ଶକ୍ତିହୀନ ।୧୯।
ସୁରନରଙ୍କର ସଙ୍କଟ ପଡ଼ିଲେ ଦୁର୍ଗତିନାଶିନୀ ମାତା
ଦୁର୍ଗା ଯଥାକାଳେ କାର୍ଯ୍ୟସିଦ୍ଧିପାଇଁ ହୋଇଥାନ୍ତି ଆବିର୍ଭୂତା ।୨୦।
ଭବରକ୍ଷିଣୀ ମା ଭବାନୀ କରନ୍ତି ଇଚ୍ଛାରେ ରୂପଧାରଣ
ଦେବାସୁରସମ କଦାପି ନୁହନ୍ତି ଦେବୀ ଦଇବ-ଅଧୀନ ।୨୧।
କାଳର ଅଧୀନ ନୁହନ୍ତି ମୃଡାନୀ ପୁରୁଷାର୍ଥପ୍ରବର୍ତ୍ତିନୀ
ସଦସତ୍‌ସ୍ୱରୂପା ସର୍ବଜୀବେ 'ଛନ୍ତି ଚେତନାଶକ୍ତିରୂପିଣୀ ।୨୨।
ବ୍ରହ୍ମାଣ୍ଡନାଟକ କରି ପୁରୁଷଙ୍କୁ ଏକା ଆନନ୍ଦ ଦିଅନ୍ତି
ପୁରୁଷ ମୋହିତ ହୁଅନ୍ତେ ସକଳ ଅତିବେଗେ ସଂହରନ୍ତି ।୨୩।
ହେ ସୁଖଦା ମାତ ଭବାନି ! ବେଦରେ ତୋହର ମହିମାସ୍ତୁତି
ହୋଇଛି, ତୁ ବେଦ-ଅବେଦ ତୁ ବିଦ୍ୟା-ଅବିଦ୍ୟା ଯେ ମହାଶକ୍ତି ।୨୪।
ହେ ଅଜା ଅନଜା ! ମହାଭୟଙ୍କରି ! ତୁ ତିର୍ଯ୍ୟକ ଊର୍ଦ୍ଧ୍ୱ ନିମ୍ନ
ବୃଷଭବାହନା ! ଇନ୍ଦ୍ରାଗ୍ନି ସୋମଙ୍କୁ ତୁହି କରିଛୁ ଧାରଣ ।୨୫।

ମା ବାରାହି ! ପାଳୁ ତ୍ୱଷ୍ଟା ପୂଷା ଭଗ ବେନି ଅଶ୍ୱିନୀକୁମାର
ତ୍ରିବିକ୍ରମ ବିଷ୍ଣୁ ପ୍ରଜାପତି ବ୍ରହ୍ମା ଦେବେ ପାଳୁ ନିରନ୍ତର ।୨୬।
ମାତଙ୍ଗୀ ଜଗତ-ଈଶ୍ୱରି ! ତୁ ଅଟୁ ପ୍ରତ୍ୟକ୍ଷ ବ୍ରହ୍ମରୂପିଣୀ
ଯଜ୍ଞୀୟ ଦେବଙ୍କ ମଧ୍ୟେ ତୁ ପ୍ରଥମା ତୁହି ଆକାଶଜନନୀ ।୨୭।
ଆତ୍ମସ୍ୱରୂପର ସ୍ଥାନ ବୁଦ୍ଧିବୃତ୍ତି ତା' ମଧ୍ୟେ ତୋ' ଅବସ୍ଥିତି
ଭକ୍ତମାନଙ୍କର ମୁକ୍ତିଦାୟିନୀ ତୁ ଅଧ୍ୟାତ୍ମରୂପିଣୀ ଶକ୍ତି ।୨୮।
ହେ ବ୍ରହ୍ମରୂପିଣୀ ଶୁଭଦାୟିନୀ ମା ! ତୁହି ସକଳ କାରଣ
ପ୍ରକୃତିପୁରୁଷାତ୍ମକ ଶୂନ୍ୟାଶୂନ୍ୟ ଜଗତ ତୋଠୁଁ ଉତ୍ପନ୍ନ ।୨୯।
ହେ ଗିରିନନ୍ଦିନି ! ଆନନ୍ଦରୂପିଣୀ ତୁହି ଅଟୁ ନିରାନନ୍ଦ
ତୁ ଅଟୁ ବିଜ୍ଞାନ ପୁଣି ଅବିଜ୍ଞାନ ତୁହି ନିଖିଳ ବ୍ରହ୍ମାଣ୍ଡ ।୩୦।
ମହାଶକ୍ତି ହରପ୍ରିୟା ! ତୁହି ବ୍ରହ୍ମ ଅବ୍ରହ୍ମ ଅଟୁ ତୁ ପୁଣି
ତୁହି ପଞ୍ଚଭୂତ ତୁ ଅପଞ୍ଚଭୂତ ମାତ ଅମ୍ବିକା ଶିବାନୀ ।୩୧।
ଜନନି ! ରସନାବିଷୟ ସକଳେ ଜାଣନ୍ତି ମଧୁମାଧୁରୀ
ଶମ୍ଭୁଙ୍କ ନୟନବିଷୟ ତୋ ରୂପ ବର୍ଣ୍ଣିବି ଅବା କିପରି ? ।୩୨।
ତୋ ବେନି ନୟନେ କଜ୍ଜଳ ଯେ ଶୋହେ ବଦନେ ଶୋହେ ତାମ୍ବୂଳ
ଲଲାଟେ କାଶ୍ମୀର କେଡ଼େ ମନୋହର, କଣ୍ଠେ ଶୋହେ ମୁକ୍ତାମାଳ ।୩୩।
ହେ ରମା ! ତୋ କଟୀତଟେ ଶୋହେ ପାଟ, ଶୋହେ ମଞ୍ଜୁଳ ମେଖଳା
କର୍ଣ୍ଣରେ କୁଣ୍ଡଳ ବିରାଜେ, ବକ୍ଷରେ ଲୋହିତ ମନ୍ଦାରମାଳା ।୩୪।
ନତାଙ୍ଗୀ କମଳବଦନୀ ଦେବୀ ତୁ ସୁନ୍ଦରୀ ଗୁରୁଗାମିନୀ
ତୁ ପୀତବସନୀ, ବର୍ଣ୍ଣେ ସୌଦାମିନୀ ନାନାଳଙ୍କାରଶୋଭିନୀ ।୩୫।
ଖଡ଼୍‌ଗ ଶୂଳ ଗଦା ଚକ୍ରକୁ ଧାରଣକରି ଅତି ଭୟଙ୍କରୀ
କରେ ଶୋହେ ଶଙ୍ଖ କୋଦଣ୍ଡ ଭୁଶୁଣ୍ଡୀ ଶର ମୁଦ୍‌ଗର ଶାଙ୍କରି ! ।୩୬।
ଧରିଅଛୁ ହସ୍ତେ ଅକ୍ଷମାଳା ଦଣ୍ଡ କମଳ ଚର୍ମକୁଣ୍ଡିକା
ବଜ୍ର ପାଶଘଣ୍ଟା ପରଶୁରେ ତୁହି ସଦାଶୋଭିତା ଚଣ୍ଡିକା ।୩୭।
ଦନୁଜ ବିନାଶି ଦେବତାଗଣଙ୍କୁ କରିବାକୁ ପରିତ୍ରାଣ
ରଣକାମିନୀ ତୁ ନାନା ଅସ୍ତ୍ରଶସ୍ତ୍ର ଭୁଜେ କରିଛୁ ଧାରଣ ।୩୮।

ଦିବ୍ୟ ଅଳଙ୍କାରେ ହୋଇ ବିରାଜିତା ଅଟୁ ମୋହନରୂପିଣୀ
ଦିବ୍ୟେନ୍ଦୁବଦନା ପଙ୍କଜନୟନା ଲାବଣ୍ୟମୟୀ ଜନନୀ ।୩୯।
ହିମାଂଶୁଶେଖରା ମନୋରମା କ୍ଷଣପ୍ରଭାସମ ଜ୍ୟୋତିର୍ମୟୀ
ତୁ ସିଂହବାହିନୀ ତ୍ରିନେତ୍ରଶୋଭିନୀ ଜଗନ୍ମାତା ମହାମାୟୀ ।୪୦।
ପାଦପଙ୍କଜ ତୋ ନୂପୁରଶୋଭିତ, ରକ୍ତବସନଶୋଭିତା
ପଦାଙ୍ଗୁଳି ତୋର ଜିଣେ ମଦନକୁ ସୁନ୍ଦରକଟୀ ସସ୍ମିତା ।୪୧।
ପ୍ରୀତା ହେଲେ ନାଶୁ ସର୍ବ ରୋଗ, ରୁଷ୍ଟା ହେଲେ ନାଶୁ ମନୋରଥ
ମାନବକୁଳର ନୋହେ ଅମଙ୍ଗଳ, ଯଦି ତୋ ପଦେ ଆଶ୍ରିତ ।୪୨।
ସତ୍ତ୍ୱରଜତମରୂପିଣୀ ତୁହି ମା ତ୍ରିଗୁଣମୟୀ ଜନନୀ
ସମ୍ଭବିଲେ ଗୁଣତ୍ରୟରୁ ଅଚ୍ୟୁତ ମହାଦେବ ପଦ୍ମଯୋନି ।୪୩।
ଦେବି ! ତୁ ନିଜର କଳାରେ କରୁଛୁ ବିଶ୍ୱର ସୃଷ୍ଟିପାଳନ
ସଂହାରକାରିଣୀ ଯଥାକାଳେ ପୁଣି କରୁ ଲୋକବିଲୟନ ।୪୪।
ଛାଡ଼ି ତୋ ସନ୍ନିଧି ସତ୍ୟସୁଖ ଲଭିପାରେ ଅବା କେଉଁ ଜନ ?
ତୋ ପଦପଙ୍କଜ ବିନା ଅସମ୍ଭବ ଜନ୍ମମୃତ୍ୟୁବିମୋଚନ ।୪୫।
ଯେଉଁ ମୁନିଗଣ ବିମଳମନରେ ଥାଆନ୍ତି ତପସ୍ୟାରତ
ତୋ କରୁଣା ବିନା ନୁହନ୍ତି ସେମାନେ ମୁକତିଲାଭେ ସମର୍ଥ ।୪୬।
ଇନ୍ଦ୍ରିୟଦମନ ତପସ୍ୟା ସମାଧିବଳେ ନ ମିଳଇ ମୁକ୍ତି
ଶିବାନି ! ତୋ ପଦରଜେ ଭାଗ୍ୟବାନ ଲଭଇ ପରମଗତି ।୪୭।
ତୁହି ସ୍ୱାହା ତୁହି ବଷଟ୍‌କାର ସ୍ୱଧା ତୁହି ସ୍ୱରସ୍ୱରୂପିଣୀ
ଅର୍ଦ୍ଧମାତ୍ରା ତୁହି ଅକ୍ଷର ଅଟୁ ତୁ ତ୍ରିବିଧ-ମାତ୍ରାରୂପିଣୀ ।୪୮।
ମହାସ୍ମୃତି ମହାମେଧା ଅଟୁ ତୁ ମା ଗୁଣତ୍ରୟବିଭାବିନୀ
ଜ୍ଞାନସ୍ୱରୂପିଣୀ ମତି ଅଟୁ ତୁହି ଲଜ୍ଜା ତୁହି ଶ୍ରୀରୂପିଣୀ ।୪୯।
ତୁ ଦେବୀ ସକଳ ପ୍ରାଣୀଙ୍କ ମଧରେ ବିଷ୍ଣୁମାୟାରୂପେ ସ୍ତୁତା
ଘଟେ ଘଟେ ତୁହି ବୁଦ୍ଧିରୂପେ ଥାଉ ଚେତନା ବୋଲି ବିଦିତା ।୫୦।
ଜୀବଙ୍କ ଅନ୍ତରେ ତୁ ନିଦ୍ରାରୂପରେ ଦେବୀ ଅଟୁ ବିରାଜିତା
କୃପାମୟି ! ତୁହି ଛାୟାରୂପେ କ୍ଷୁଧାରୂପେ ଶକ୍ତିରୂପେ ସ୍ଥିତା ।୫୧।

ଶିବପ୍ରିୟା ! ତୁହି ତୃଷ୍ଣାରୂପେ କ୍ଷମାରୂପେ ଶାନ୍ତିରୂପେ ସ୍ଥିତା
ଶ୍ରଦ୍ଧାରୂପେ ଦେବୀ ତୁ ଲଜ୍ଜାରୂପରେ ସକଳଭୂତେ ସଂସ୍ଥିତା ।୫୨।
କାନ୍ତିରୂପେ ଲକ୍ଷ୍ମୀରୂପେ ମା ମଙ୍ଗଳା ଜୀବେ ଜୀବେ ବିରାଜିତା
ସ୍ମୃତିରୂପେ ବୃତ୍ତିରୂପେ ତୁ ଈଶ୍ୱରୀ ପ୍ରାଣୀଙ୍କ ଦେହେ ସଂସ୍ଥିତା ।୫୩।
ଚିତିରୂପିଣୀ ତୁ ଭ୍ରାନ୍ତିରୂପିଣୀ ତୁ ଚଣ୍ଡିକା ତୁଷ୍ଟିରୂପିଣୀ
ମାତୃରୂପେ ତୁହି ଘଟେ ଘଟେ ରହି ନିଖିଳବିଶ୍ୱବ୍ୟାପିନୀ ।୫୪।
ବ୍ରହ୍ମାଣ୍ଡଧାରିଣୀ ଜନନି ! ଧାରଣାଶକ୍ତି ବିହୁନେ ତୋହରି
କୂର୍ମ ଶେଷନାଗ ବିଶାଳ ପୃଥିବୀ ଧରି ପାରନ୍ତେ କିପରି ? ।୫୫।
ପୃଥିବୀରୂପରେ ଯଦି ତୁ ନଥା'ନ୍ତୁ ଶିବା ଶରଣଦାୟିନି !
ଚରାଚର ବିଶ୍ୱ ଆଶ୍ରୟ ନିଅନ୍ତା କେଉଁଠି ଜଗଜ୍ଜନନି ! ।୫୬।
ନରେ ଯେ କରନ୍ତି ବ୍ରହ୍ମାବିଷ୍ଣୁଶିବ ଦେବତାଗଣଙ୍କୁ ସ୍ତୁତି
ମାୟାମୋହିତ ସେ, ହୁଅନ୍ତି ପ୍ରବଳ ସୁରେ ଲଭି ତୋର ଶକ୍ତି ।୫୭।
ଦେବତାମାନବ-ଅସୁରମାନଙ୍କୁ ଦେଉ ଶାଶ୍ୱତ ଜୀବନ
ମୁମୁକ୍ଷୁ ତୋ ପଦ ଭଜନ୍ତି, କଦାପି ନ ପୂଜନ୍ତି ନୀଚଜନ ।୫୮।
ମାୟା ତୋତେ ଜାଣି ନ ପାରଇ ମାୟାମଧ୍ୟେ ହେଲେ ହେଁ ତୋ ସ୍ଥିତି
ତୁ କଲ୍ୟାଣୀ ଶାନ୍ତିଦାୟିନୀ ହୃଦୟେ ରହି ଅଟୁ ପ୍ରେରୟିତ୍ରୀ ।୫୯।
ବ୍ରହ୍ମା ବିଷ୍ଣୁ ଶିବ ତୋ ପଦପଙ୍କଜ ସତତ କରନ୍ତି ଧ୍ୟାନ
ମୂଢ଼ଜନେ ଭବସାଗରେ ପଡ଼ନ୍ତି ନକରି ତୋର ସ୍ମରଣ ।୬୦।
ତୋ କଞ୍ଜପୟର ସ୍ମରି ଲୋ ଜନନି ! ସୃଷ୍ଟି କରନ୍ତି ସ୍ୱୟଂଭୂ
ପାଳନ କରନ୍ତି ବିଷ୍ଣୁ, ଯଥାକାଳେ ସଂହାର କରନ୍ତି ଶମ୍ଭୁ ।୬୧।
ସୁରପ୍ରିୟା ଭକ୍ତଭାଗ୍ୟପ୍ରଦାୟିନି ! ପୁରାକାଳେ ତ ଶ୍ରୀହରି
ଆରାଧି ତୋତେ ମା ! ଶଙ୍କରଙ୍କୁ ମୋହ କରିଥିଲେ ସାଜି ନାରୀ ।୬୨।
କନ୍ଦର୍ପ ପ୍ରଣମି ତୋତେ, ମନୋହର ତନୁରେ ତ ବାରମ୍ବାର
ପରମେଶ୍ୱରୀ ମା ! ହରିଥିଲେ ମନ ମହାମୁନିମାନଙ୍କର ।୬୩।
ସକଳଜଗତହେତୁ ତୋତେ ଦେବେ ନପାରନ୍ତି ଅତିକ୍ରମି
ରାଜରାଜେଶ୍ୱରୀ ତ୍ରିପୁରସୁନ୍ଦରୀ ଆଦିଶକ୍ତି ତୁ ଜନନୀ ।୬୪।

ସକଳ ନିଷ୍ପାପ ଜିତେନ୍ଦ୍ରିୟ ମୁନି କରନ୍ତି ତୋର ସାଧନା
ମୃଡ଼ାନି ! ଅଟୁ ତୁ ପରାଶକ୍ତି ଦେବୀ ଶୁଭଦ ତୋ ଆରାଧନା ।୬୫।
ପବିତ୍ର ଋଗ୍‌ଯଜୁସାମମନ୍ତ୍ରର ତୁ ଅଧିଷ୍ଠାନ ସର୍ବେଶ୍ୱରି !
ଶ୍ରୁତିସ୍ମୃତିଶାସ୍ତ୍ର ପୁରାଣର ବୀଜ ଅଟୁ ବାଣୀ-ଅଧୀଶ୍ୱରୀ ।୬୬।
କ୍ଷିତି ଅପ ତେଜ ମରୁତ ଆକାଶ ଶଙ୍କରବଲ୍ଲଭା ତୁହି
ତୁ ମନ, ସକଳନିଧାନ ଅଟୁ ମା, ତୋ ବିନୁ ଆନ ନୁହଁଇ ।୬୭।
ତୁ ମାତା ଶାରଦା ସତ୍ୟରୂପା ମେଧା ସକଳଶାସ୍ତ୍ରବେଦିନୀ
ସଂସାରସାଗରନୌକାରୂପିଣୀ ତୁ ନଗେଶପ୍ରିୟନନ୍ଦିନି ! ।୬୮।
ଭକ୍ତିଭରେ ଯିଏ ଭଜନ୍ତି ତୋତେ ମା ! ଦେଉ ତାଙ୍କୁ ବିଦ୍ୟାକୀର୍ତ୍ତି
ସୁତ ବିତ୍ତ କାନ୍ତା ପାଇ ଇଚ୍ଛାମତେ ଆଦର ସଦା ଲଭନ୍ତି ।୬୯।
ମାଆ ପାର୍ବତି ! ତୋ କୃପାରେ ପୁଣ୍ୟାତ୍ମା ଆଚରଇ ନିଜ ଧର୍ମ
ମୃଡ଼ାନି ! ତ୍ରିଲୋକଫଳପ୍ରଦାୟିନି ! ତହୁଁ ଯାଏ ସ୍ୱର୍ଗଧାମ ।୭୦।
ଦୀନ ଅସହାୟ କରନ୍ତି ତୋ ସ୍ତୁତି ଭକ୍ତାନୁଗ୍ରହକାରିଣି !
ପରାତ୍ପରା ଶକ୍ତି ତୋତେ ବାରମ୍ବାର ବନ୍ଦଇ ବିଶ୍ୱବ୍ୟାପିନି ! ।୭୧।
ତୁହି ଦେବୀ ଲକ୍ଷ୍ମୀ ଜନନୀ ସାବିତ୍ରୀ ବାଣୀରୂପା ସରସ୍ୱତୀ
ତୁହି ମା ସକଳ ଶକ୍ତି ବରଣୀୟା ତ୍ରିକାଳଜ୍ଞାନପ୍ରଦାତ୍ରୀ ।୭୨।
ଇଚ୍ଛାଶକ୍ତି କ୍ରିୟାଶକ୍ତି ଜ୍ଞାନଶକ୍ତି ତୁହି ତ୍ରିଶକ୍ତିଦାୟିନୀ
ତୁହି ମା ପରମା ପରାଶକ୍ତି ଅଟୁ ସର୍ବଶକ୍ତିପ୍ରଦାୟିନୀ ।୭୩।
ଦିବ୍ୟରୂପା ମହାରୂପା ଦୀପ୍ତିରୂପା ଜଗନ୍ମାତା ସନାତନୀ
ଦୋଷନିବାରିଣୀ ତ୍ରିତାପହାରିଣୀ ମହାପାପପ୍ରଣାଶିନୀ ।୭୪।
ଅଭୀଷ୍ଟଦାୟିନୀ ଯୋଗମାୟା ଭକ୍ତଜନଙ୍କ ଆର୍ତ୍ତିନାଶିନୀ
ବରପ୍ରଦାୟିନୀ ଦେବି ! ମୋର ଦୁଃଖ ହର ତୁ ହରଭାମିନୀ ।୭୫।
ବିଦ୍ୟା ତ ତୋହରି ଧନ ତ ତୋହରି ଜନନୀ ସିଂହବାହିନି !
ଏ ସଂସାରେ ପତ୍ନୀ ଯଶ ସର୍ବସୁଖ ତୋହରି ଭବରୂପିଣୀ ।୭୬।
ଶରଣ୍ୟା ଜନନି ! ତ୍ରିନୟନା ଦେବି ! ସକଳ-ଇଷ୍ଟଦାୟିନୀ
ସର୍ବଭାବେ ତୋତେ କରୁଅଛି ସ୍ତୁତି ସର୍ବଯୋଗସ୍ୱରୂପିଣୀ ।୭୭।

ତୁ କ୍ଲେଶହାରିଣୀ ସୌମ୍ୟା ମା ଭବାନୀ ସଚ୍ଚିଦାନନ୍ଦରୂପିଣୀ
କାୟମନୋବାକ୍ୟେ ବାରମ୍ବାର ତୋର ପଦେ ବନ୍ଦଇ ଜନନୀ ।୭୮।
ଚିଦାନନ୍ଦା ! ତାପ ନିବାର, କଲୁଷ ହର ତୁ ପୁଣ୍ୟଦାୟିନି !
ଏ ଶୋକସଂସାରେ ତୁହି ଏକା ମୋର ଶରଣ ହିତକାରିଣି ! ।୭୯।
ସୁଖଦା ସ୍ୱସ୍ତିଦା କଲ୍ୟାଣି ! ମାଆ ତୋ ଚରଣ ମୋର ଶରଣ
ଚିରଶାନ୍ତି ଦେଇ ପୀଡ଼ିତ ସନ୍ତପ୍ତ ଏ ଜନକୁ କର ତ୍ରାଣ ।୮୦।
ଇନ୍ଦ୍ରିୟଗଣ ମୋ ଚଞ୍ଚଳମନକୁ ସଦା କରନ୍ତି ହରଣ
ମହାଶକ୍ତି ! ଦିଅ ଶକ୍ତି, କରିବାକୁ ସେ ସକଳର ଦମନ ।୮୧।
କାମ କ୍ରୋଧ ଲୋଭ ମଦ ମୋହ ଈର୍ଷ୍ୟା ମାନସରିପୁ ପ୍ରବଳ
ଶତ୍ରୁବିନାଶିନୀ କୌବେରି ! ମୋର ଏ ଶତ୍ରୁଙ୍କୁ ନାଶ ସତ୍ୱର ।୮୨।
ଜଗତ-ଈଶ୍ୱରୀ ମାତ ପ୍ରଜ୍ଞେଶ୍ୱରୀ ପାବନୀ ଜନତାରିଣି !
ପ୍ରଣତ ପତିତ ହତବୁଦ୍ଧି ଜନେ ରକ୍ଷାକର ହେ ଜନନି ! ।୮୩।
ଜୀବ-ଉଦ୍ଧାରିଣୀ ଶାଙ୍କରି ! ଅଟଇ ମୁଁ ଦୀନହୀନ ଅନାଥ
ହେ ଭବତାରିଣି ! ପାର କର, ମୁହିଁ ଭବସାଗରସନ୍ତପ୍ତ ।୮୪।
ଅତିମୋହ ହେତୁ ନାଶ ଯାଉଛି ମୁଁ ପ୍ରତିକ୍ଷଣ ସୁଧାମୟି !
ଜ୍ଞାନସ୍ୱରୂପିଣି ! ଅଜ୍ଞାନତିମିର ଦୂରକର ଜ୍ୟୋତିର୍ମୟି ! ।୮୫।
ଚଞ୍ଚଳମନା ମୁଁ କରିନାହିଁ କେବେ ଶ୍ରଦ୍ଧାଭରେ ତୋ ଭଜନ
କରୁଣାମୟୀ ମା ! ତଥାପି ମୋଠାରେ ରଖ ତୋ କୃପାନୟନ ।୮୬।
ଜନନୀ ଶିବାନି ! ନ ଜାଣଇ ମୁହିଁ ତୋର ଭକ୍ତି, ପୂଜାବ୍ରତ
ତୋ କୃପା କେବଳ ଶରଣ ମୋହର ହେ କୃପାସାଗରୀ ମାତ ! ।୮୭।
ତୋର ଶ୍ରୀଚରଣେ ଯାହା ମୋ ପ୍ରମାଦ କ୍ଷମାକର କ୍ଷମାପ୍ରଦା !
ପୁତ୍ର ହୋଇପାରେ ଦୋଷୀ ସିନା ଭବେ, କୁମାତା ନହୁଏ କଦା ।୮୮।
ଅଜ୍ଞାନରୁ କେବେ ତୋ ଚରଣ ସେବା କରିନି ଜଗଜ୍ଜନନି !
ତଥାପି ତୋ କୃପା ରହିଛି ମୋଠାରେ ଜୀବାନୁଗ୍ରହକାରିଣି ! ।୮୯।
ମୋପରି କଲ୍ମଷୀ ନାହିଁ, ତୋ ପରି ବା କାହିଁ ପାପବିନାଶିନୀ
କୁକର୍ମରୁ ରକ୍ଷାକର ମାତ ଦୁର୍ଗା ! ଭବବନ୍ଧନମୋଚନି ! ।୯୦।
ମୋ ସକଳ ପୀଡ଼ା ଜାଣ ଲୋ ଜନନି ! ତୁହି ହୃଦୟବାସିନୀ
ହର ମୋ ଅନ୍ତରଦୁଃଖ ହରପ୍ରିୟା ! ତୁହି ସନ୍ତାପହାରିଣୀ ।୯୧।

କଲ୍ୟାଣି ! ତୁ ଏକା ଅଟୁ ମୋର ବଳ ସକଳ-ଇଷ୍ଟଦାୟିନୀ
ରୂପ ଦିଅ ଜୟ ଦିଅ ଯଶ ଦିଅ ରିପୁଙ୍କୁ ନାଶ ଜନନି ! ।୯୨।
କାଳାତୀତା ମହାକାଳୀ ଜଗଦମ୍ବା ତାଣ୍ଡବନୃତ୍ୟଶୋଭିନୀ
କଳିଯୁଗେ ମୋତେ ତୋ କରଶରଣ ଦିଅ ଶରଣଦାୟିନୀ ।୯୩।
ପାପବିଦାରିଣୀ ପୁଣ୍ୟସ୍ୱରୂପିଣୀ ଶିବା ନରକହାରିଣି !
ବିମଳା ମାତା ଗୋ ! ପାପରାଶି ମୋର ହର ଦୀନାର୍ତ୍ତତାରିଣୀ ।୯୪।
ସଂପଦ ଦିଅ ମା ! ଆରୋଗ୍ୟ ଦିଅ ମା ! ଦିଅ ସୁଖ ଚିରନ୍ତନ
ଧର୍ମ-ଅର୍ଥ-କାମ-ପ୍ରଦାୟିନୀ ଦିଅ କୈବଲ୍ୟଦାୟକ ଜ୍ଞାନ ।୯୫।
ସ୍ମରଣମାତ୍ରକେ ଭୀତି ଦୂରକରୁ ଦେଉ ତୁ ଶୋଭନ ମତି
ସର୍ବୋପକାରିଣୀ ମାତ ସର୍ବେଶ୍ୱରୀ ଦୟାକର ହେ ପାର୍ବତି ! ।୯୬।
ହେ ସର୍ବମଙ୍ଗଳମାଙ୍ଗଲ୍ୟା ଦୁର୍ଗା ମା ! ଦେଉ ତୁ ସଭିଙ୍କୁ ମୁକ୍ତି
ସ୍ତ୍ରୀଏ ତୋ ସ୍ତୁତି କରନ୍ତି, ତୋ ପଦେ ବାରମ୍ବାର ମୋ ପ୍ରଣତି ।୯୭।
ତୋର କୃପାବଳେ ମଙ୍ଗଳମୟ ମୋ ପଥ ହେଉ ମା ଶିବାନି !
ସକଳ କାର୍ଯ୍ୟରେ ସଦା ମୋ ବିଜୟ ହେଉ ମା ଶୁଭକାମିନି ! ।୯୮।
ତୋତେ ମୁଁ ସର୍ବସ୍ୱ ମନେକରି ମାତ ! ତୋର ପଦେ ଏଜୀବନ
କଲି ସମର୍ପଣ, ଯାହା ସମୁଚିତ ତାହା ତୁ କର ପ୍ରଦାନ ।୯୯।
ସଙ୍କଟତାରିଣୀ ଶରଣ୍ୟା ବରେଣ୍ୟା ! ବିଷମସଙ୍କଟୁଁ ତ୍ରାଣ
କର ମାତ ଦୁର୍ଗା ! ନାହିଁ ଅନ୍ୟଗତି, ତୋ ପଦେ ନେଲି ଶରଣ ।୧୦୦।

## (ଫଳଶ୍ରୁତି)

ଯେଉଁ ସୁଧୀଜନ ଏ ଦୁର୍ଗାଶତକ ନିତ୍ୟ ପଢ଼ିବେ ଭକ୍ତିରେ
ହେବ ତାଙ୍କ ପାପକ୍ଷୟ, ସେ ଲଭିବେ ପରମଶାନ୍ତି ଅଚିରେ ।୧୦୧।
ପାଇବେ ବିପୁଳ ବିତ୍ତ, ପାଇବେ ସେ ଯଶ ଏ ମହୀମଣ୍ଡଳେ
ପାଇବେ ଅଭୀଷ୍ଟ ପୁତ୍ରପୌତ୍ର ଆଦି ମହାଶକ୍ତିକୃପାବଳେ ।୧୦୨।
ଦୁର୍ଗାଙ୍କର ନାମଗୁଣକୀର୍ତ୍ତନରେ ନିରନ୍ତର ତାଙ୍କୁ ସ୍ମରି
ଅନ୍ତକାଳେ ଦେହ ଛାଡ଼ି ସେ ଲଭିବେ ମୁକ୍ତି, ଭବ ଯିବେ ତରି ।୧୦୩।

॥ ଇତି ଶ୍ରୀଭରତଚନ୍ଦ୍ରନାଥକୃତ 'ଶ୍ରୀଦୁର୍ଗାଶତକମ୍'ର ସ୍ୱୟଂକୃତ ଓଡ଼ିଆ ପଦ୍ୟାନୁବାଦ ସଂପୂର୍ଣ୍ଣ ॥

# ଶ୍ରୀ ଦୁର୍ଗା-ଅଷ୍ଟୋତ୍ତରଶତ-ନାମାବଳୀ

ଓଁ ସତ୍ୟୈ ନମଃ
ଓଁ ସାଧ୍ୱୈ ନମଃ
ଓଁ ଭବପ୍ରୀତାୟୈ ନମଃ
ଓଁ ଭବାନ୍ୟୈ ନମଃ
ଓଁ ଭବମୋଚନ୍ୟୈ ନମଃ
ଓଁ ଆର୍ଯ୍ୟାୟୈ ନମଃ
ଓଁ ଦୁର୍ଗାୟୈ ନମଃ
ଓଁ ଜୟାୟୈ ନମଃ
ଓଁ ଆଦ୍ୟାୟୈ ନମଃ
ଓଁ ତ୍ରିନେତ୍ରାୟୈ ନମଃ (୧୦)
ଓଁ ଶୂଳଧାରିଣ୍ୟୈ ନମଃ
ଓଁ ପିନାକଧାରିଣ୍ୟୈ ନମଃ
ଓଁ ଚିତ୍ରାୟୈ ନମଃ
ଓଁ ଚନ୍ଦ୍ରଘଣ୍ଟାୟୈ ନମଃ
ଓଁ ମହାତପସେ ନମଃ
ଓଁ ମନସେ ନମଃ
ଓଁ ବୁଦ୍ଧ୍ୟୈ ନମଃ
ଓଁ ଅହଙ୍କାରାୟୈ ନମଃ
ଓଁ ଚିତ୍ତରୂପାୟୈ ନମଃ
ଓଁ ଚିତାୟୈ ନମଃ (୨୦)
ଓଁ ଚିତ୍ୟୈ ନମଃ
ଓଁ ସର୍ବମନ୍ତ୍ରମୟ୍ୟୈ ନମଃ
ଓଁ ସତ୍ତାୟୈ ନମଃ
ଓଁ ସତ୍ୟାୟୈ ନମଃ
ଓଁ ଆନନ୍ଦସ୍ୱରୂପିଣ୍ୟୈ ନମଃ
ଓଁ ଅନନ୍ତାୟୈ ନମଃ
ଓଁ ଭାବିନ୍ୟୈ ନମଃ
ଓଁ ଭାବ୍ୟାୟୈ ନମଃ
ଓଁ ଭବ୍ୟାୟୈ ନମଃ
ଓଁ ଅଭବ୍ୟାୟୈ ନମଃ (୩୦)
ଓଁ ସଦାଗତ୍ୟୈ ନମଃ
ଓଁ ଶାମ୍ଭବ୍ୟୈ ନମଃ
ଓଁ ଦେବମାତ୍ରେ ନମଃ
ଓଁ ଚିନ୍ତାୟୈ ନମଃ
ଓଁ ରତ୍ନପ୍ରିୟାୟୈ ନମଃ
ଓଁ ସର୍ବବିଦ୍ୟାୟୈ ନମଃ
ଓଁ ଦକ୍ଷକନ୍ୟାୟୈ ନମଃ
ଓଁ ଦକ୍ଷଯଜ୍ଞବିନାଶିନ୍ୟୈ ନମଃ
ଓଁ ଅପର୍ଣ୍ଣାୟୈ ନମଃ
ଓଁ ଅନେକବର୍ଣ୍ଣାୟୈ ନମଃ (୪୦)
ଓଁ ପାଟଳାୟୈ ନମଃ
ଓଁ ପାଟଳାବତ୍ୟୈ ନମଃ
ଓଁ ପଟ୍ଟାମ୍ବରପରୀଧାନାୟୈ ନମଃ
ଓଁ କଳମଞ୍ଜୀରରଞ୍ଜିନ୍ୟୈ ନମଃ
ଓଁ ଅମେୟବିକ୍ରମାୟୈ ନମଃ
ଓଁ କ୍ରୂରାୟୈ ନମଃ
ଓଁ ସୁନ୍ଦର୍ଯ୍ୟୈ ନମଃ
ଓଁ ସୁରସୁନ୍ଦର୍ଯ୍ୟୈ ନମଃ
ଓଁ ବନଦୁର୍ଗାୟୈ ନମଃ
ଓଁ ମାତଙ୍ଗ୍ୟୈ ନମଃ (୫୦)
ଓଁ ମତଙ୍ଗମୁନିପୂଜିତାୟୈ ନମଃ
ଓଁ ବ୍ରାହ୍ମ୍ୟୈ ନମଃ

ଓଁ ମାହେଶ୍ୱର୍ଯ୍ୟୈ ନମଃ
ଓଁ ଐନ୍ଦ୍ର୍ୟୈ ନମଃ
ଓଁ କୌମାର୍ଯ୍ୟୈ ନମଃ
ଓଁ ବୈଷ୍ଣବ୍ୟୈ ନମଃ
ଓଁ ଚାମୁଣ୍ଡାୟୈ ନମଃ
ଓଁ ବାରାହ୍ୟୈ ନମଃ
ଓଁ ଲକ୍ଷ୍ମ୍ୟୈ ନମଃ
ଓଁ ପୁରୁଷାକୃତ୍ୟୈ ନମଃ (୬୦)
ଓଁ ବିମଳୋତ୍କର୍ଷିଣ୍ୟୈ ନମଃ
ଓଁ ଜ୍ଞାନାୟୈ ନମଃ
ଓଁ କ୍ରିୟାୟୈ ନମଃ
ଓଁ ନିତ୍ୟାୟୈ ନମଃ
ଓଁ ବୁଦ୍ଧିଦାୟୈ ନମଃ
ଓଁ ବହୁଳାୟୈ ନମଃ
ଓଁ ବହୁଳପ୍ରେମ୍‌ଣେ ନମଃ
ଓଁ ସର୍ବବାହନବାହନାୟୈ ନମଃ
ଓଁ ନିଶୁମ୍ଭଶୁମ୍ଭହନନ୍ୟୈ ନମଃ
ଓଁ ମହିଷାସୁରମର୍ଦ୍ଦିନ୍ୟୈ ନମଃ (୭୦)
ଓଁ ମଧୁକୈଟଭହନ୍ତ୍ର୍ୟୈ ନମଃ
ଓଁ ଚଣ୍ଡମୁଣ୍ଡବିନାଶିନ୍ୟୈ ନମଃ
ଓଁ ସର୍ବାସୁରବିନାଶାୟୈ ନମଃ
ଓଁ ସର୍ବଦାନବଘାତିନ୍ୟୈ ନମଃ
ଓଁ ସର୍ବଶାସ୍ତ୍ରମୟ୍ୟୈ ନମଃ
ଓଁ ସତ୍ୟାୟୈ ନମଃ
ଓଁ ସର୍ବାସ୍ତ୍ରଧାରିଣ୍ୟୈ ନମଃ
ଓଁ ଅନେକଶସ୍ତ୍ରହସ୍ତାୟୈ ନମଃ
ଓଁ ଅନେକାସ୍ତ୍ରସ୍ୟ ଧାରିଣ୍ୟୈ ନମଃ
ଓଁ କୁମାର୍ଯ୍ୟୈ ନମଃ (୮୦)
ଓଁ ଏକକନ୍ୟାୟୈ ନମଃ
ଓଁ କୈଶୋର୍ଯ୍ୟୈ ନମଃ
ଓଁ ଯୁବତ୍ୟୈ ନମଃ
ଓଁ ଯତ୍ୟୈ ନମଃ
ଓଁ ଅପ୍ରୌଢ଼ାୟୈ ନମଃ
ଓଁ ପ୍ରୌଢ଼ାୟୈ ନମଃ
ଓଁ ବୃଦ୍ଧମାତ୍ରେ ନମଃ
ଓଁ ବଳପ୍ରଦାୟୈ ନମଃ
ଓଁ ମହୋଦର୍ଯ୍ୟୈ ନମଃ
ଓଁ ମୁକ୍ତକେଶ୍ୟୈ ନମଃ (୯୦)
ଓଁ ଘୋରରୂପାୟୈ ନମଃ
ଓଁ ମହାବଳାୟୈ ନମଃ
ଓଁ ଅଗ୍ନିଜ୍ୱାଳାୟୈ ନମଃ
ଓଁ ରୌଦ୍ରମୁଖ୍ୟୈ ନମଃ
ଓଁ କାଳରାତ୍ର୍ୟୈ ନମଃ
ଓଁ ତପସ୍ୱିନ୍ୟୈ ନମଃ
ଓଁ ନାରାୟଣ୍ୟୈ ନମଃ
ଓଁ ଭଦ୍ରକାଳ୍ୟୈ ନମଃ
ଓଁ ବିଷ୍ଣୁମାୟାୟୈ ନମଃ
ଓଁ ଜଳୋଦର୍ଯ୍ୟୈ ନମଃ (୧୦୦)
ଓଁ ଶିବଦୂତ୍ୟୈ ନମଃ
ଓଁ କରାଳ୍ୟୈ ନମଃ
ଓଁ ଅନନ୍ତାୟୈ ନମଃ
ଓଁ ପରମେଶ୍ୱର୍ଯ୍ୟୈ ନମଃ
ଓଁ କାତ୍ୟାୟନ୍ୟୈ ନମଃ
ଓଁ ସାବିତ୍ର୍ୟୈ ନମଃ
ଓଁ ପ୍ରତ୍ୟକ୍ଷାୟୈ ନମଃ
ଓଁ ବ୍ରହ୍ମବାଦିନ୍ୟୈ ନମଃ (୧୦୮)